# ସୌଭାଗ୍ୟ

ଗୋପାଳ ଚନ୍ଦ୍ର ଲେଙ୍କା

ଫ୍ରେଣ୍ଡସ୍ ପବ୍ଲିଶର୍ସ

# ସ୍ରୋତର ନାମ ଋତ

ଲେଖକ :

କମଳାକାଂତ ଲେଂକା

ପ୍ରକାଶକ :

ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ
ବିନୋଦବିହାରୀ
କଟକ-୭୫୩୦୦୨

ପ୍ରଚ୍ଛଦ :
ଅସିତ ମୁଖାର୍ଜୀ

ପ୍ରକାଶ କାଳ
ଅଗଷ୍ଟ, ୧୯୭୮

ମୁଦ୍ରଣ :
ଜୟନ୍ତ ପ୍ରିଣ୍ଟର୍ସ
କାଜିବଜାର
କଟକ-୭୫୩୦୦୧

ମୂଲ୍ୟ : ବାର ଟଂକା ମାତ୍ର

**SROTARA NAMA RUTA**

Author :
**Sri Kamalakanta Lenka**

Publisher :
**Sahadev Pradhan**
Friends' Publishers
Binodbehari
Cuttack-753002.
Orissa, (India).

Cover design :
**Asit Mukherjee**

First Edition :
August, 1978

Printer :
**Jayanta Printers**
**Kazibazar**
Cuttack—753001.

**Price : Rupees Twelve Only**

ଘୁମ ରେ, ଏଇ କାଲି ପୁଣି
ତୋରି ବାଟରେ ମୁଁ ହଜିଯିବି ।
ହଜିଯିବ ବି ମଣିଷର ସବୁ କିଛି
ସଯତ୍ନ ସାଇତା ଗର୍ବର ଚିହ୍ନ ସବୁ ।
ଯାହା ରହିଯିବ ସବୁ ଦିନକୁ ମଣିଷର
ଏକାଂତ ଆପଣାର ହୋଇ, ସେଇଟି
କେବଳ ଶୂନ୍ୟତା, ସେଇ ଶୂନ୍ୟତାଈଁ
ସବୁ କିଁଛି, ପ୍ରାପ୍ତିର, ପୂର୍ଣ୍ଣତାର
ସାମାନ୍ୟତମ ଝଲକ !

ଆଜି ତୋରି ସ୍ମୃତିରେ
ସେଇ ଝଲକର ସ୍ଫୁଲିଂଗ
ଝଲୁଚି ନା ନିଭୁଚି ! ନିଭୁଚି ନା ଡହକୁଚି !!

—ଶ୍ରୀପା

ରତ

ରତ

ରତ

ଆଧୁନିକ ଓଡ଼ିଆ କବିତାରେ କବି କମଳାକାଂତ ଲେଂକା ଏକ ସ୍ମରଣୀୟ ପ୍ରତିଭା । ଏ ଯାବତ୍ ଶ୍ରୀ ଲେଂକାଂକର ଅନ୍ୟୂନ ସାତୋଟି କବିତା ଗ୍ରଂଥ ପ୍ରକାଶିତ । ତନ୍ମଧ୍ୟରୁ 'ଉତ୍ତରଣ' (୧୯୬୬), 'ସ୍ମରଣ ବିସ୍ମରଣ' (୧୯୭୩), 'କବିତାର ମୁହଁ' (୧୯୭୪) ଓ 'ଅତଂତଃ ନିଷ୍କୃପ' (୧୯୭୫) ପ୍ରଭୃତି ସଂକଳନ ଏକ ଏକ ଉଲ୍ଲେଖଯୋଗ୍ୟ ସୃଷ୍ଟି ।

ଶ୍ରୀ ଲେଂକା ମୁଖ୍ୟତଃ ଜଣେ ଜୀବନବାଦୀ କବି । 'କବିତାର ମୁହଁ' ଏହାର ପ୍ରମାଣକ । ଆଧୁନିକ ଜୀବନର ନବୀନତମ ସଂଭାବନାର ସ୍ପଷ୍ଟୋକ୍ତି, ଆତ୍ମ-ଅଭିବ୍ୟକ୍ତିର ଅକୁଂଠ ସ୍ପଷ୍ଟବାଦିତା ଓ ଭଲ-ଭେଲର ନିର୍ଭୀକ ଉଚ୍ଚାରଣ ତାଂକ ସୃଷ୍ଟିରେ ସମୁଜ୍ଜ୍ୱଳ । ଜୀବନ ପ୍ରତି ମୋହମୁକ୍ତ ଦୃଷ୍ଟିଭଂଗୀ ଓ ସଂବେଦନଶୀଳ ମାର୍ମିକ ଚିଂତନ କବି ଶ୍ରୀ ଲେଂକାଂକ କବିତାର ବୈଶିଷ୍ଟ୍ୟ । ବସ୍ତୁବାଦୀ ମଣିଷର ଈଶ୍ୱରୀୟ କରୁଣା ପ୍ରତି ଥିବା ପ୍ରଚ୍ଛନ୍ନ ଆଗ୍ରହ ଓ ସଂପୃକ୍ତି ତାଂକ ଉତ୍ତର-ସତ୍ତୁରି କବିତାଗୁଡ଼ିକରେ ପରିଲକ୍ଷିତ । ଆବେଗ ଓ ପ୍ରର୍ଯ୍ୟାର ଗୀତିଧର୍ମୀ ମିଶ୍ରରାଗ, କଥିତ ଓ କାବ୍ୟ ଭାଷାର କଳାତ୍ମକ ସମନ୍ୱୟ, ଜୀବନକୁ ଖୋଲାଖୋଲି ଭାବେ ସାମ୍ନାସାମ୍ନି ହବାର ଦୁର୍ଦ୍ଦମନୀୟ କାବ୍ୟିକ ପ୍ରକାଶ ତାଂକ କବିତାର ବିଶିଷ୍ଟତା । 'ନିଜ ସହ ଘୋଟେ

ସାକ୍ଷାତକାର' ଏଇ ଦୃଷ୍ଟିରୁ ଏକ ଉଲ୍ଲେଖଯୋଗ୍ୟ, ବିବାଦୀୟ ଗ୍ରଂଥ । ଆଜି 'ସ୍ରୋତର ନାମ ଋତ' ପ୍ରକାଶନ ବେଳେ ଆମେ ଆଶ୍ୱସ୍ତ ଯେ ଶ୍ରୀ ଲେଂକା ଆମମାନଂକ ଜୀବନର ଆତ୍ମିକ ସ୍ୱରଟିକୁ ଭୁଲି ନାହାଂତି ଓ ଏହାର କାବ୍ୟ-ରୂପ ପାଇଁ ତାଂକ କାବ୍ୟ-ପୁରୁଷ ଅନୁଭୂତିର ବର୍ତ୍ତିଳ ଇଲାକା-ବହିର୍ଭୂତ ଛବିଟିଏ ଆଂକି ନାହିଁ । ତେବେ କ'ଣ ଆଂକିଛଂତି ? ଆମ ଅଂକା ବଂକା ଜୀବନର ଅଂକ କଷା ଘର୍ମାକ୍ତ ମୁହୂର୍ତ୍ତଠାରୁ ତାଂକ କବିତା କ'ଣ ଗୋଟେ ସତେଜ ଗଂଗଶିଉଳି ଫୁଲର ଝଟଝଟିଆ ସକାଳ ନୁହେଁ ??

ପ୍ରକାଶକ

# ମୋ ଦୃଷ୍ଟିରେ ସ୍ରୋତର ନାମ

—୧—

ସଂସ୍କୃତିର ବିବର୍ତ୍ତନ ଅନୁସାରେ ମନୁଷ୍ୟ ଏକ ଚତୁଷ୍ପଦ ସେ:କ ନିଜକୁ ଏକ ମହୀରୁହରେ ରୂପାନ୍ତରିତ କରିଛି । ଚତୁଷ୍ପଦ ସଦୃଶ ତାହାର ଗତି ଆନୁଭୂମିକ, ସ୍ଥିତି ସଂଘର୍ଷଭିତ୍ତିକ ଓ ଦୃଷ୍ଟି ଅଭିଜ୍ଞତାଶ୍ରୟୀ । ପରିବେଶ ଓ ବାସ୍ତବତା ସହିତ ନିତ୍ୟନୈମିତ୍ତ ସଂଘାତ ଓ ପ୍ରତିଘାତ ଫଳରେ ମାନବର ସତ୍ୟକାମ ଅଭିଜ୍ଞତା ଓ ଅନୁଭୂତିଗୁଡିକ ଯୁଗାନୁ-କ୍ରମିକ ଧାରାରେ ବିକାଶ ଲାଭକରେ । ଯୁଗ ଚେତନା ତଥା ବ୍ୟକ୍ତି-ମାନସର ଅନ୍ୱେଷା ଏବଂ ସୃଜନଶୀଳତା ଯୋଗୁ ବିଜ୍ଞାନ ଓ କଳାର ଉଦ୍ଭବ ହୁଏ; ଯାହାର ସମନ୍ୱୟରେ ଗଢ଼ିଉଠେ ସଂସ୍କୃତି । ସଂସ୍କୃତି-ସଚେତନ ପ୍ରତିଟି ମନୁଷ୍ୟ ଏକ ଏକ ତରୁ - ତରୁ ସଦୃଶ ତାହାର ଗତି ଊର୍ଦ୍ଧ୍ୱମୁଖୀ, ଉତ୍ତରଣଶୀଳ, ସ୍ଥିତି ପରଂପରାର ମୂଳଧାରା ଉପରେ ପ୍ରତିଷ୍ଠିତ ଏବଂ ଦୃଷ୍ଟି ପରିପୂର୍ଣ୍ଣତାର ସଂଭାବନାରେ ପ୍ରସାରିତ ।

କଳା ମାନବର ଅଂତର୍ନିହିତ ସୃଜନଶୀଳ ସଂଭାବନାର ଏକ ରୂପମୟ ପ୍ରକାଶ; କବିତା ତାର ଏକ ବାଙ୍ମୟରୂପ । ଅବଶ୍ୟ ପ୍ରତି ଯୁଗରେ କବିତାର ମୂଳ ଅନୁଭୂତି ଓ ଅର୍ଜିତ ବାଗ୍‌ରୀତି ସ୍ୱାତଂତ୍ର୍ୟମୟ, ପୁଣି ବ୍ୟକ୍ତି ମାନସର ବୈଶିଷ୍ଟ୍ୟ ଅନୁଯାୟୀ ସେହି ସ୍ୱାତଂତ୍ର୍ୟତା ବୈଶିଷ୍ଟ୍ୟ ମଣ୍ଡିତ ଠିକ୍ ଯେପରି ପ୍ରବାହମାନ ସ୍ରୋତର ପ୍ରତି ମୋଡ଼ରେ ତାହାର ଗତି ଓ ରୂପ ଏବଂ ଅଂତର୍ଗତ ଧାରା ଓ ଆବର୍ତ୍ତଗୁଡ଼ିକ ବୈଶିଷ୍ଟ୍ୟମୟ । ଅଥଚ ସମଗ୍ର ଭାବରେ ଯେକୌଣସି ଦେଶର କବିତାର ଏକ ନିର୍ଦ୍ଦିଷ୍ଟ ପରଂପରା ଅଛି, ଯାହା ଯୁଗାନୁକ୍ରମିକ ପରିବର୍ତ୍ତନଶୀଳତା ମଧ୍ୟରେ କବିତାର ସତ୍ତାକୁ ଯୁଗୋପଯୋଗୀ କରି କବିତା ପ୍ରବାହକୁ ନିରନ୍ତରସ୍ରୋତା ଓ ଅନାବିଳ ରଖିଥାଏ । ଯୁଗ ଚେତନାର କ୍ରମିକ ଅବକ୍ଷୟ ଯୋଗୁଁ କବିତାର ଧାରା ଯେତେବେଳେ ନିଜର ଜୀବନୀ ଶକ୍ତିକୁ ହରାଇ ମୁମୂର୍ଷୁ ଓ ଶୁଷ୍କପ୍ରାୟ ହୋଇପଡ଼େ, ନୂତନ ଯୁଗର କବି ନବାଗତ ସମୟର ପରିପ୍ରେକ୍ଷିତରେ ଅତୀତର ପରଂପରାକୁ ନୂତନ ଜୀବନ୍ୟାସ ଦେଇ ଭଗୀରଥପରି ସେହି

ଧାରାକୁ ନୂତନ ରୂପରେ ଆବାହନ କରନ୍ତି । ଫଳତଃ କବିତା ପୁନଶ୍ଚ ଯୁଗଚେତନାର ଜୁଆରରେ ଭରପୂର ହୋଇଉଠେ ।

କବିତା ନୂତନ ନୁହେଁ; ଯଦିଓ ନୂତନ ଯୁଗର କବି ନିଜର ନୂତନ ଚେତନାକୁ ନୂତନ ବାଗ୍‌ଭଙ୍ଗୀରେ ପ୍ରକାଶ କରିଥାଂନ୍ତି । ଯୁଗ ଚେତନା ସହିତ କ୍ରମାଗତ ସମ୍ପୃକ୍ତ ହେଉଥିବାରୁ କବିତାର ଅଂତର୍ନିହିତ ସତ୍ୟଟି କାଳକ୍ରମେ ବ୍ୟାପକ ଓ ଗଭୀରତର ହେଉଥାଏ । ମନେରଖିବା ଉଚିତ୍ ଯେ କବିତା ପ୍ରମୋଦ ଉଦ୍ୟାନର ନିର୍ମୂଳ ପୁଷ୍ପ ନୁହେଁ; କିଂବା ନଂଦନକାନନର ପାରିଜାତ ନୁହେଁ । ଏହା ପରଂପରା ପୁଷ୍ଟ କୌଣସି ସଚେତନ ସ୍ରଷ୍ଟାର କାବ୍ୟାନୁଭୂତିରୁ ବିକଶିତ ଜୀବନବୋଧର ଏକ ନାଂଦନିକ ଫଳ । ଜୀବନର ଜଟିଳତା, ସୁଖ ଦୁଃଖ, ରକ୍ତ-ମାଂସ ଏବଂ ମନଗହନର କୁସୁମ ଓ କୀଟ—ଏ ସବୁକୁ ନିଗାଡ଼ି ନିଗାଡ଼ି କବି ବଂଚିବାର ଯେଉଁ ନିର୍ଯ୍ୟାସ ଟିକକର ସଂଧାନ ପାଂନ୍ତି, ତାହାକୁ ହିଁ ଭିତ୍ତିକରି ରୂପାୟିତ କରଂନ୍ତି କବିତା । ତେଣୁ କବିତା ଅନୁଭୂତ ସତ୍ୟର ସ୍ପଂଦନ ବହନ କରେ ।

ସତ୍ୟର ନିର୍ଦ୍ଦିଷ୍ଟ ରୂପ ନାହିଁ । ବୈଜ୍ଞାନିକ ସତ୍ୟ ଯୁକ୍ତିଯୁକ୍ତ ଉକ୍ତିଦ୍ୱାରା ପ୍ରତିପାଦିତ ଓ ପ୍ରମାଣସିଦ୍ଧ । କବିତାର ସତ୍ୟ ପ୍ରତ୍ୟୟାତ୍ମକ ଉକ୍ତିଦ୍ୱାରା ଉପସ୍ଥାପିତ ଏବଂ ଅନୁଭବ ବେଦ୍ୟ । ଅନୁଭୂତ ସତ୍ୟର ଧର୍ମ ଏକ ଦିଗରୁ ନୂତନ ଦିଗଂତକୁ ପ୍ରସାରିତ ହେବ । ଏହି ପ୍ରକାର ସତ୍ୟର ଉତ୍ତରଣ ଓ ବ୍ୟାପ୍ତି, ଗତି ଓ ଭୂତି ନିରବଚ୍ଛିନ୍ନ । କୌଣସି କବିଂକର କ୍ରମାଗତ ସାଧନାର ପରିସରରେ ତାଂକର ଜୀବନ-ବୋଧର ଯେଉଁ ବିକାଶ ଘଟିଥାଏ ତାହା ମଧ୍ୟ ଏକ ଅବିଚ୍ଛିନ୍ନ ଧାରା । ବାସ୍ତବିକ୍ ଜଣେ ଚିଂତକର—କାବ୍ୟାନୁଭୂତ ସତ୍ୟ ମଧ୍ୟ କାବ୍ୟ ପରଂପରାର ଏକ ପ୍ରସ୍ତରଣ ବା (Cross Section) । ପରଂପରା ସଦୃଶ ଏହାର ପ୍ରତୀକ ପ୍ରବାହ—ତରୁ, ସ୍ରୋତ, ଆଲୋକ କିଂବା ଅନ୍ୟ କିଛି । ପ୍ରତୀକ ଦୃଷ୍ଟିରୁ ତରୁ ଓ ସ୍ରୋତ ଏକ, ଯେପରି ବହ୍ନି ଓ ଗୋଲାପ ଏକ । ସ୍ରୋତ, ସତ୍ୟ ବା ନୀତିର ଏକ ସାଂକେତିକ ରୂପ; କାରଣ ଏକ ନିର୍ଦ୍ଦିଷ୍ଟ ସୀମାଭିତରେ ଯାହା ସତତଃ ଅଗ୍ରଗାମୀ ଓ ଅସ୍ଥିର, ତାହା ପୁଣି ଉତ୍ପତ୍ତି ଓ ସଂଗମର କଳ୍ପିତ ସୀମା

ମଧ୍ୟରେ ଏକ ଆପାତଃ ସ୍ଥିର ଓ ଶାଶ୍ୱତ ସତ୍ତା । ଏହି ଦୃଷ୍ଟିରୁ 'ସ୍ରୋତର ନାମ ଋତ' (The stream called truth)–ଶୀର୍ଷକଟି ସମସ୍ତ ସଚେତନ କବିଙ୍କର ଅନୁଭୂତିର ବିକାଶଶୀଳ ସତ୍ୟତା ସଂବନ୍ଧରେ ନିର୍ଦ୍ଦିଷ୍ଟ ସୂଚନା ବହନ କରେ ।

— ୨ —

ଉତ୍ତର ଶୃଙ୍ଖଳରୁ ଆରମ୍ଭ ହୋଇଥିବା ଓଡ଼ିଆ ଆଧୁନିକ କବିତାର ବିକାଶ ବିଭିନ୍ନ ପରୀକ୍ଷଣ ସତ୍ତ୍ୱେ ମୋଟାମୋଟି ଆଶାପ୍ରଦ ଭାବରେ ଗତିଶୀଳ । ବିଗତ ତିନି ଦଶନ୍ଧି ଏହାର ତିନୋଟି କ୍ରମିକ-ପର୍ଯ୍ୟାୟର ସୂଚନା ଦିଏ । ପଂଚମ ଦଶକର କବିତା ମୁଖ୍ୟତଃ ସଂଗ୍ରହାତ୍ମକ । ଏ ସମୟର ସ୍ରଷ୍ଟାମାନେ ଗତାନୁଗତିକତାରେ ଆବଦ୍ଧ କବିତାର ଗତିଧାରାକୁ ମୁକ୍ତ କରିବାକୁ ଯାଇ ନୂତନ ଅନୁଭୂତି ଓ ନୂତନ ବାଗ୍‌ରୀତିର ଅନୁକରଣ କରିଛନ୍ତି । ଏହାର ଆଧୁନିକୀକରଣ ନିମନ୍ତେ ଗଂଗା ଓ ଗୋଦାବରୀ ପରିବର୍ତ୍ତେ ଟେମ୍‌ସ୍‌ ଓ ରାଇନ୍ ନଦୀର ସନ୍ନିଧି ଘଟାଇଛନ୍ତି କବିତାର ପ୍ରବାହ ମଧ୍ୟରେ ଏବଂ କୁରୁକ୍ଷେତ୍ର ଓ ପ୍ରଭାସର ବର୍ଣ୍ଣିକା ପରିବର୍ତ୍ତେ ଦେଖିଛନ୍ତି ଲଣ୍ଡନ ଓ ପ୍ୟାରୀ ସହରର ଭୟାବହ ଦୃଶ୍ୟ । ଫଳତଃ କବିତାର ନିଜସ୍ୱ ପ୍ରାଣ ଧାରାଟି ବୈଦେଶିକ ଉପାଦାନ ଓ ରୀତିର ପ୍ରାଥମିକ ସଂଘର୍ଷରେ ଯେତିକି ବ୍ୟସ୍ତ ଓ ବିକ୍ଷୁବ୍ଧ ହୋଇ ଉଠିଛି, ସେହି ଆଲୋଡ଼ନ ମଧ୍ୟରେ କବିତାର ଆବେଦନଟି ସେତିକି ଅସ୍ପଷ୍ଟତର ହୋଇଯାଇଛି । ତେଣୁ ପରବର୍ତ୍ତୀ ଦଶକର ସ୍ରଷ୍ଟାମାନେ ବହିର୍ବିହରଣରୁ ଦୃଷ୍ଟି ପ୍ରତ୍ୟାହାର କରିଆଣି ନାନାବିଧ ପରୀକ୍ଷା, ନିରୀକ୍ଷାରେ ପ୍ରବୃତ୍ତ ହୋଇଛନ୍ତି । ଏହି ଦଶନ୍ଧିର କବିତା ମୁଖ୍ୟତଃ ପ୍ରୟୋଗାତ୍ମକ । ବୁଦ୍ଧିବାଦୀ ବିଶ୍ଳେଷଣ, ଚିତ୍ରକଳ୍ପର ଖଣ୍ଡିବାଦୀ ବହୁଳତା, ସୂଚନାତ୍ମକତା, ଗୁପ୍ତବାଦୀ ଅସ୍ପଷ୍ଟତା, ଦୃଶ୍ୟବସ୍ତୁର ଅନ୍ତରାଳରେ ଥିବା ଅବିଶେଷ ଭାବ ( abstract )ର ରୂପାୟନ, ମିଥ୍ ଓ ତାତ୍ପର୍ଯ୍ୟକ ଆପେକ୍ଷିକତାର ( objective correlative ) ବ୍ୟବହାର, ଚିତ୍ର ଏବଂ ସଂଗୀତର ସମଧର୍ମୀ ଗଠନ ଭଂଗିମା, ବିଭିନ୍ନ ବାଗ୍‌ରୀତିର ସମନ୍ୱୟ

ପ୍ରଭୃତି ପରୀକ୍ଷଣ ଫଳରେ ଦୁର୍ବୋଧ୍ୟତାର ଗୁପ୍ତ ସେତେ ବଢ଼ି ଯାଇଛି ପାଠକର ସେତେ ପ୍ରତ୍ୟକ୍ଷ ହାନି ଘଟିଛି । ଯେଉଁଠାରେ କବିତା ଅନୁଭୂତିର ନିବିଡ଼ତାକୁ ଉପସ୍ଥାପନ କରିବାରେ ଅସମର୍ଥ, ସେଠାରେ କବିତାର ଆବେଦନ ଅବ୍ୟକ୍ତ । ଅଙ୍କର କବି ଏ ବିଷୟରେ ଉଗ୍ର ଅଧିକ ସଚେତନ । ଉତ୍ତର ସତୁରିର କବିତା ଉପଲବ୍ଧିର କବିତା । ସ୍ୱଚ୍ଛର ବିଷୟ ଯେ ସଘନ ଅନୁଭୂତି, ସମନ୍ୱିତ ଚେତନା, ଆବେଗ ସଂଗୃହୀ ଚିନ୍ତନ, ସାବଲୀଳ ପ୍ରୟୋଗ ଏବଂ ମାର୍ମିକ ଆବେଦନ ପ୍ରାପ୍ତ ଅଧିକାଂଶ କ୍ଷେତ୍ରରେ ବାଂଛିତ ସଫଳତାସହ ଏବେ ଆଗୃତ୍ତର ପରିଧି ମଧ୍ୟକୁ ଆସି ପାରିଛି ।

ଉପରୋକ୍ତ ଦୃଷ୍ଟିକୋଣରୁ ବିଚାର କଲେ କବି କମଳାକାନ୍ତଙ୍କ କବିତା ସ୍ଥିର ଭାବରେ ବିକାଶଶୀଳ । ପଂଚମ ଦଶକର ଉତ୍ତର ଭାଗରେ ତାଙ୍କ ସାଧନାର ଶୁଭାରଂଭ ହୋଇଥିଲେ ହେଁ ଏହାର ପ୍ରକୃତ ବିକାଶ ସୂଚିତ ହୁଏ ଷଷ୍ଠଦଶକରେ । ଅଧୁନା ଏକ ସଫଳ ପ୍ରୟୋଗ-ବାଦୀ ହିସାବରେ ସ୍ୱୀକୃତ ଏହି କବିଙ୍କର ପଞ୍ଚମ କବିତା 'ଉତ୍ତରଣ' ( ୧୯୭୭ ) ଉତ୍ତରଣ ବୋଧର ପରିଚୟସୂଚକ ହେଲେ ପ୍ରୟୋଗ-ବାଦର ସ୍ୱାକ୍ଷର ବହନ କରେ ତାଠାରୁ ଅଧିକ । ଶବ୍ଦ ଗ୍ରଂଥନ, ଶବ୍ଦ ବିଧି ମାନଙ୍କର ଅଲଂକାର ପ୍ରୀତି ସଦୃଶ ଚିତ୍ରକଳ୍ପ ପ୍ରତି ମୋହ, ବହୁ ଚିତ୍ରକଳ୍ପର ଏକତ୍ର ସମାବେଶ, ଚିତ୍ରକଳ୍ପ ମଧ୍ୟରେ ଏକ ଶ୍ରେଣୀର ପ୍ରତ୍ୟୟକୁ ଅନ୍ୟ ଶ୍ରେଣୀରେ ରୂପାନ୍ତିତ କରିବା ( synaesthesia ), ବିସ୍ତାରଣ ଶୈଳୀ ପ୍ରଭୃତି କେତେକ ସାଧାରଣ ତ୍ରୁଟି ଏହି ସ୍ତରରେ ପରିଲକ୍ଷିତ ହୁଏ ।

ସ୍ଥାନେ ସ୍ଥାନେ ଆବେଦନ ହୃଦୟସ୍ପର୍ଶୀ ହେଲେହେଁ ସମଗ୍ର କବିତାର ଆବେଦନଟି ସଂଗଠିତ ହୋଇପାରେ ନାହିଁ । କବିଙ୍କର ଉତ୍ତର ସତୁରିର କବିତାର ଫସଲ 'ସ୍ମରଣ ବିସ୍ମରଣ', 'କବିତାର ମୁହଁ' ଓ 'ଅଂତତଃ ନିଷ୍ଟୁପ' ଏ ଦିଗରୁ ଉନ୍ନତ ଏବଂ ବହୁଳ ଭାବରେ ତ୍ରୁଟିମୁକ୍ତ । କବିତା-ଗୁଡ଼ିକ ଅଧିକାଂଶ ଆବେଗ ପ୍ରଧାନ, ଦୃଷ୍ଟିଭଂଗୀ ଆଧୁନିକ ଧରଣର ରୋମାଂଟିକ ବେଦନା ଜର୍ଜର, ବାସ୍ତବତା ଭକ୍ତ ଏବଂ ଦୁଃଖବାଦୀ । କବି ଜାଗତିକ ଜୀବନର ଯାବତୀୟ ଜଟିଳତା ମଧ୍ୟରେ ବର୍ତ୍ତମାନକୁ କ୍ରମଶଃ ସ୍ୱୀକାରକରି ନେଇଛନ୍ତି, ମାତ୍ର ଜୀବନ ସଂଗ୍ରାମରେ ଏକ କ୍ଷତ ବିକ୍ଷତ

ଦୈନିକ ଜୀବନର ବାସ୍ତବତାକୁ ଯେପରି ଦୃଷ୍ଟିରେ ଗ୍ରହଣ କରନ୍ତି ତାହାର ସ୍ୱର କବିତାଗୁଡ଼ିକରେ ଧ୍ୱନିତ ହେଉଛି । ସ୍ୱାତନ୍ତ୍ର୍ୟୋତ୍ତର ଦୃଷ୍ଟିକୋଣରୁ ଦୈହିକ ପ୍ରେମ, ବାସ୍ତବତାର ନିର୍ଯାତନ, ଜୀବନପ୍ରତି ବିଦ୍ରୂପ, ଆଧୁନିକତାସିକ୍ତ ଆଧ୍ୟାତ୍ମିକ ଚିନ୍ତନ, କାଳ ଓ ମୃତ୍ୟୁର ଚେତନା ବିଷୟବସ୍ତୁ ମଧ୍ୟରେ ପ୍ରଧାନ । ପ୍ରକାଶଭଙ୍ଗୀ ନିଃସଂକୋଚ, ନିର୍ଭୀକ । ଶୈଳୀରେ ଶବ୍ଦାଡ଼ମ୍ବର ଓ ଶବ୍ଦକଳ୍ପର କଠିନ ସଂଯମ ଏବଂ କଥିତ ବାଗ୍‌ରୀତିର ଅଧିକତର ପ୍ରୟୋଗ ପରିଦୃଷ୍ଟ ହୁଏ ।

—ଗ—

'ସ୍ରୋତର ନାମ ରିତ' କମଳାକାନ୍ତଙ୍କର ସପ୍ତମ କବିତା ଗ୍ରନ୍ଥ । ଏହାର ଅବ୍ୟବହିତ ପୂର୍ବବର୍ତ୍ତୀ ପ୍ରକାଶନ 'ଅନ୍ତତଃ ନିଷ୍ପ୍ରତ'ରେ କବି ଏକ ନିଷ୍ଫଳ କ୍ଷୋଭରେ ନିରୁପାୟ ହୋଇ କିଛିକ୍ଷଣ ପାଇଁ—ଅନ୍ତତଃ ନିଷ୍ପ୍ରତାଠାରେ ଆତ୍ମସମର୍ପଣ କରିଥିଲେ—ଯେଉଁ ନିଷ୍ପ୍ରତାର ଅଷ୍ଟୋତ୍ତରଶତ ନାମ ମଧ୍ୟରୁ ଶେଷ ନାମଟି ହେଉଛି ମୃତ୍ୟୁ । କବି ସ୍ୱୀକାର କରନ୍ତି ଯେ, 'ଏ ନିଷ୍ପ୍ରତା ଅସହ୍ୟ—'ଗୋଟିଏ ଲୋମଶ କାଳର ବଜ୍ର କଠିନ ଜାବ ।' ଏଥିରୁ ବର୍ତ୍ତିବାର ଏକମାତ୍ର ଉପାୟ ସୃଷ୍ଟିର ସଙ୍ଗୀତ । ତେଣୁ ନିଷ୍ପ୍ରତାର ଉଜାଣି ଭାଙ୍ଗି ପୁଣି ସୃଷ୍ଟିର ଜୁଆର ଆସିଛି, ନୂତନ ସ୍ରୋତ ବହୁଛି ଯାହାର ଇଙ୍ଗିତ ହେଉଛି ସତ୍ୟ । ଯାହା ସମସ୍ତେ ଅନୁଭବ କରନ୍ତି କିନ୍ତୁ କହିପାରନ୍ତି ନାହିଁ । ସେହି ସତ୍ୟଟିକୁ ପ୍ରକାଶକରିବା କବିତାର ଉଦ୍ଦେଶ୍ୟ ।

ଗ୍ରନ୍ଥଟିର କବିତାଗୁଡ଼ିକ ଜୀବନର ବହୁମୁଖୀ ତୀକ୍ଷ୍ଣ ଅନୁଭୂତି ଉପରେ ଆଧାରିତ । ତାହାର ଅନ୍ତରାଳରୁ କବିଙ୍କର ଜୀବନ ଦର୍ଶନ ସମ୍ବନ୍ଧରେ ଏକ ଏକ ଝଲକର ସ୍ପଷ୍ଟ ସୂଚନା ମିଳେ । ପ୍ରଥମ କବିତା 'ଗୋଲକ ଧନ୍ଦା' ଜୀବନ ରହସ୍ୟର ଏକ ସାମାନ୍ୟ କଥନ । ଦୃଶ୍ୟ ଓ ଅଦୃଶ୍ୟର ଗୋଲକ ଧନ୍ଦାରେ ମନୁଷ୍ୟ ନିଜର ଅତି ଜଣାଶୁଣା ଅଭିଜ୍ଞତା ଭିତରେ କିଛି ଅଜଣାର ଅମୃତ ସ୍ପର୍ଶ ପାଇବା ଆଶାରେ ଧନ୍ଦିହୁଏ, ନୂତନ ସ୍ୱାଦର ମାଧୁର୍ଯ୍ୟ ଆହରଣ କରିବା ପାଇଁ ତିକ୍ତ ଅନୁଭୂତିର

ପୁନରାବୃତ୍ତି କରେ, ପୁଣି ମାତୃବୋଧର ମନ୍ତ୍ର ଉଚ୍ଚାରଣ କରୁ କରୁ, ଭୌତିକ ଓ ଦୈହିକ ଆକର୍ଷଣର ପ୍ରଲୋଭନରେ ମତ୍ତ ହୁଏ । ଏହିପରି ଜୀବନରେ ବାରଂବାର କ୍ଷତବିକ୍ଷତ ହୋଇ ମଧ୍ୟ ସେହି ଯନ୍ତ୍ରଣାକୁ ବାରଂବାର ବରଣ କରିବା ମନୁଷ୍ୟର ପ୍ରକୃତି । ଏହାହିଁ ଜୀବନର ଅପରୂପ— ଆକର୍ଷଣ ।

> “ଯାହା ଖାଲି ଥଳ-କୂଳ-ହୀନ ହ୍ରଦ
> ମଝି ଚଉଁରୀରେ ଠିଆହୋଇ
> ପଦ୍ମତୋଳା ବୋଲିବା ଓ ଷତର ଚନ୍ଦ୍ରକୁ
> ପୁନର୍ବାର ନାଗୁଣୀର ମୁହେଁ ଯୋଖିଦେବା ।”
>
> ( ଗୋଲକଧଂଦା )

ଦୁଃଖବାଦର ଏହିପରି ଏକ ବାସ୍ତବ ପରିସୀମା ମଧ୍ୟରେ ଆଧୁନିକ ଜୀବନର ଆଉ ଏକ ନିପୁଣ ଓ ନିଖୁଣ ସାଂକେତିକ ଚିତ୍ର ମିଳେ 'କଳାକାହ୍ନୁ' କବିତାଟିରେ । 'କଳାକାହ୍ନୁ' ମିଥ୍ ଓ ପ୍ରତୀକ ଚିତ୍ରଣର ଏକ ସଫଳ ପ୍ରୟୋଗ । ମୁରଲୀଫୁଙ୍କା ରସିକ କାଳିଆକାହ୍ନୁଙ୍କର ପୂର୍ବବୃତ୍ତିଟିକୁ (Myth) କେବଳ ଭାବପ୍ରକାଶର ଏକ ମାଧ୍ୟମରୂପେ ବ୍ୟବହାର ନକରି କବି ଏହାର ଏକ ଆଧୁନିକ ପୁନର୍ବ୍ୟାଖ୍ୟା ଦେଇଛନ୍ତି ଏବଂ କାହ୍ନୁରୂପରେ ଆଧୁନିକ ମନୁଷ୍ୟର ଏକ ଶ୍ଲେଷୋକ୍ତି ବ୍ୟଞ୍ଜିତ ଚିତ୍ର ଆଙ୍କି ଅନୁଭୂତିର ଗଭୀରତାକୁ ଗଭୀରତର କରିଛନ୍ତି । କଳା, ପ୍ରେମ ଓ ଆଧ୍ୟାତ୍ମିକତାର ମିଳନ ବିନ୍ଦୁ ଏବଂ କଳାକାର ପ୍ରେମିକ ଓ ଦ୍ରଷ୍ଟା । କାହ୍ନୁ ବା କୃଷ୍ଣ କର୍ଷଣର ଓ କଷଣର ପ୍ରତୀକ । ଏହି ଦୃଷ୍ଟିରୁ ନାଗଦଳନ, ଖୁଦପ୍ରୀତି, ଜଉଘର ପୋଡ଼ି, ଶିଆଳଲଟାରେ ଛଟପଟ ଯନ୍ତ୍ରଣା ସବୁ ବୃତ୍ତାନ୍ତର ଆକ୍ଷିପ୍ତ ବ୍ୟାଖ୍ୟା କରି କଳାକାରକୁ/ଆଧୁନିକ ମନୁଷ୍ୟକୁ ଏପରି ଏକ ମନୁଆ, କାଡ଼ୁଆ, ଛଟପଟ ନାଗର ରୂପରେ ଚିତ୍ରଣ କରାଯାଇଛି ଯେ କି ଜୀବନର ସବୁ ବିଡ଼ମ୍ବନା ମଧ୍ୟରେ ନିଜର ମଜ୍ଜାଗତ ଖିଆଲ-ବଶରେ ହିଁ ବନରାଜି ଜୀବନ ଓ ସମୟର ଯମୁନା କୂଳରେ ନିଜର ବଂଶୀ ଫୁଙ୍କିବାରେ ମତୁଆଲା ।

'ରେ କହ୍ନାଇ, ତୋ କନିଆ, ତୋ ଭା ଧନ ଧନ
ତୋ ଦୋ ଦୋ ବାହ୍ନା ହସର ଫୁଲଝର
ଏମିତି ଝୁରୁଥାଉ କ ଦିନ, କ ରାତି, କଏ ବାସମୟ
ସମୟର ଅନ୍ୟ ନାମ କଳାକାହ୍ନୁ, କହ୍ନାଇର
ଜହ୍ନରାତି, ଯମୁନା ଓ ଛଳ ଛଳ ବସଂତର ଲୟ।"

(କଳାକାହ୍ନୁ)

କମଳାକାଂତଂକର ଜୀବନ ଦର୍ଶନର ତିନୋଟି ସ୍ତର—ଜୀବନ ଜିଜ୍ଞାସା, ଜୀବନବୋଧ ଓ ଜୀବନାଂଗୀକାର। ଶେଷୋକ୍ତ ବିଷୟ 'ନିଜ ସପକ୍ଷରେ' ଶୀର୍ଷକ କବିତାଟିରେ ସ୍ପଷ୍ଟ। ଏହି କବିତାରେ କବି ଏକ ସ୍ଥିତିବାଦୀ ହିସାବରେ ନିଜର ସଂପର୍କଶୂନ୍ୟ ଏକାକୀତ୍ୱ ସଂବଂଧରେ ସଂପୂର୍ଣ୍ଣ ସଚେତନ। ସେ ଦୁଃଖବାଦୀ କିଂତୁ ତାଂକର ଦୁଃଖ ବ୍ୟକ୍ତିଗତ କ୍ଳେଦ ନୁହେଁ, ଏହା ସମଗ୍ର ମାନବ ଜାତିର ଜନ୍ମଗତ ବୋଝ—'ଜନ୍ମ ନିଆଁର ଦୁଃଖ, ଭସ୍ମୀଭୂତର ଦିନର ପାହାଂତି।' ତାଂକ ମନରେ ସଂଗ୍ରାମରତ ସ୍ଥିତିବାଦୀର ଧୈର୍ଯ୍ୟ ଓ ସାହସ—'ଲଢ଼ିବାରପଣ ଜୀଇବାର ଦଂଶନରେ ହୁଏ ଉଗ୍ର।' ସମୟର ବଶବର୍ତ୍ତୀ ହୋଇ ମଧ୍ୟ ସେ ତାହାର ଦାସତ୍ୱ ମାନିନେବାକୁ ଅସମ୍ମତ, ଯେହେତୁ କାଳକୁ ଜୟକରିବାର ମୃତ୍ୟୁଂଜୟୀ ଶକ୍ତି ତାଂକଠାରେ ନିହିତ, 'ମୋ କବିତା ଦୁଃଖ ସୁଖ ପ୍ରୀତିମୟ ମୁହୂର୍ତ୍ତର/କଲ୍ୟାଣୀର ଝିଅ।' ଏହି ବିଶ୍ୱରରୁ ନୈରାଶ୍ୟ ଓ ବିମୁଖତା ପରିବର୍ତ୍ତେ ଜୀବନପ୍ରତି ମମତ୍ୱବୋଧ ଓ ଅଂଗୀକାରର, ଜୀବନକୁ ଗ୍ରହଣ କରିନେଇ ଏହାର ତିକ୍ତ କଷାୟକୁ ଉପଲବ୍ଧି କରିବାର ଏକ ପୌନଃପୁନିକ ଆଶାପ୍ରଦ ପ୍ରତିଶ୍ରୁତି ପାଠକକୁ ଅଭିଭୂତ କରେ।

"ମୁଁ ଏକାଂତ ଭଲପାଏ ଆପଣାର
ନୂତନ ପୃଥିବୀକୁ। ଆପଣାର
ପ୍ରବୃତ୍ତି ଓ ସ୍ଖଳନର ରମ୍ୟକୋଣାର୍କକୁ,
ଭଲପାଏ ଭଂଗା ଖେଳନାକୁ,
ଭଲପାଏ ଦୁଃସ୍ଥ ମଣିଷକୁ। ଭଲପାଏ
ବଂଚିବାର ନୂଆ ନୂଆ ଭୁକ୍ଷର୍ଯ୍ୟର ସ୍ପଂଦିତ ଇଚ୍ଛାକୁ।"

(ନିଜ ସପକ୍ଷରେ)

ଉତ୍ପାତବର୍ତ୍ତ ଦୃଷ୍ଟିରୁ ଆଉ କେତୋଟି ଝଲକ ମିଳେ 'ମରଣ-ଜାତକ' କବିତାଟିରେ ! ଏ କବିତାର ବିଶେଷତ୍ୱ ତାହାର ଶ୍ଳେଷୋକ୍ତି (Irony), ଯାହା ଉକ୍ତିକୁ ଶାଣିତ, ଭାବକୁ ପ୍ରସାରିତ ଓ ଅନୁଭୂତିକୁ ବୈଚିତ୍ର୍ୟମୟ କରେ । କବିତାଟି ଆଧୁନିକ ଜୀବନକୁ ସଫଳ ଭାବରେ ମୁହୂର୍ତ୍ତିଏ ବଂଚିବା ପାଇଁ ଏକ ବଳିଷ୍ଠ ଆହ୍ୱାନ ।

ଦମ୍ଭଣ୍ୟ ଜୀବନ ଗଳାରେ
ଘଂଚିବାର ବ୍ଲେଡ଼ ଧାର ଆଜ ପରଖିବା ।
... ... ...
ବଂଚିବାର ଫଳକରେ ଆମେ ସବୁ ଯିବା ଆସ
ଜୀଅଂତା ଶବର ଲୁହେ ଘରମର କବିତା ଲେଖିବା,
ଏବଂ କଣ୍ଟୁ ପ୍ରତିଶ୍ରୁତି ପ୍ରତିଦାନ ଛାଗିଦା ଆଁଖିବା,
ଅଂଧାରର କଳା ବୋଲି ଦେହୁ ଆମ ସଂସ୍କୃତିର ଲୁଗା ପାଲଟିବା ।
(ମରଣ ଜାତକ)

ଡଃ ପ୍ରସନ୍ନକୁମାର ମିଶ୍ରଂକ ଭାଷାରେ "କମଳାକାଂତଂକ କବିତାର ସ୍ୱରରେ ଓ ସ୍ଫୁରଣରେ କୌଣସି ଏକ ନିର୍ଦ୍ଦିଷ୍ଟ କାବ୍ୟାଦର୍ଶନର ବା ସମାଜ ଦର୍ଶନର ସୁର ଖୋଜିଲେ ମିଳେନା, କିଂତୁ ଜୀବନପାଇଁ ଗୋଟିଏ ଦର୍ଶନର ଅନୁସଂଧାନରେ ସେ ଯେ ବ୍ୟସ୍ତ—ଏହା ସ୍ପଷ୍ଟ ବାରିହୁଏ ।" ବର୍ତ୍ତମାନର କବିତା ଗ୍ରଂଥରେ ଏହି ଦର୍ଶନଟି କେବଳ ଯେ ବାରିହୁଏ ତାହା ନୁହେଁ ବରଂ ସ୍ପଷ୍ଟତର ଭାବରେ ଉଚ୍ଚାରିତ ବୋଲି ମନେହୁଏ ।

—୪—

ଆଧୁନିକ ଯୁଗର କବି ବ୍ୟକ୍ତି-କୈନ୍ଦ୍ରିକ । ବ୍ୟକ୍ତି-କୈନ୍ଦ୍ରିକତା ନୂତନସ୍ୱର ନୁହେଁ ସତ, ମାର୍ଣ୍ଣ ରୋମାଂଟିକ ଯୁଗର ବ୍ୟକ୍ତି-କୈନ୍ଦ୍ରିକତା ସହିତ ଆଜିର ପାର୍ଥକ୍ୟ ଏ ଯୁଗର ଆପେକ୍ଷିକ ଦୃଷ୍ଟିଭଂଗୀ । ଅତୀତର କବି ନିଜ ହୃଦୟର ନିରୁତା ଆବେଗକୁ ସ୍ୱାଧୀନଭାବରେ ବ୍ୟକ୍ତ କରୁଥିବା-ସ୍ଥଳେ ଆଜିର କବି ମନୁଷ୍ୟ, ସମାଜ, ଈଶ୍ୱର, ବିଭିନ୍ନ ବସ୍ତୁବାଦ ଓ ମନସ୍ଥିତି ସଂବଂଧରେ ନିଜର ମାନସିକ ଘାତ ପ୍ରତିଘାତର

ବିଶ୍ଳେଷଣାତ୍ମକ ଚିନ୍ତ ଅଂକବାରେ ଅଭ୍ୟସ୍ତ । ଏ ଦୃଷ୍ଟିରୁ କମଳା-କାଂତଙ୍କର ବିଷୟବସ୍ତୁଗୁଡ଼ିକର ବିସ୍ତୀର୍ଣ୍ଣ ପରିଧିର ଓ ଭାବ – ବୈଚିତ୍ର୍ୟ ଆକର୍ଷଣୀୟ । ସାଂପ୍ରତିକ ଜୀବନ ପ୍ରତି କଟାକ୍ଷ, ବିଦ୍ରୂପ ଓ ଖେଦର କେତେକ ବିଶିଷ୍ଟ ଭଂଗୀ ଲକ୍ଷ୍ୟକରିହୋଇପାରେ । 'ବିଯୁକ୍ତା' କବିତାରେ ସଂକେତ ସାହାଯ୍ୟରେ ଜୀବନପ୍ରତି କଟାକ୍ଷ, 'ପରିହାସ'ରେ ପ୍ରଶ୍ନବାଚୀର କ୍ରମାନ୍ୱୟୀ ପ୍ରୟୋଗ ଫଳରେ ସାମାଜିକ ଚଳନ ସଂବଂଧରେ ତୀକ୍ଷ୍ଣ ବିଦ୍ରୂପ ଉପଭୋଗ୍ୟ । ପ୍ରଗଲ୍‌ଭବାକ୍‌ ଆଧୁନିକ ମନୁଷ୍ୟ ବହିର୍ମୁଖୀ ନହୋଇ ବାକ୍‌ସଂଯତ ଓ ଅଂତର୍ମୁଖୀ ହେଲେ ଯେ ବ୍ୟକ୍ତି ଚେତନାର ଊର୍ଦ୍ଧ୍ୱାୟନ ସଂଭବ ଏହି ସତ୍ୟର ଏକ ଆଧୁନିକ ବ୍ୟଂଗାତ୍ମକ ପ୍ରକାଶ 'ଜିଭ ।' 'କଥାର ମଂଜ' କବିତାଟି ଆଧୁନିକ ସମାଜର ଏକ ସାଂକେତିକ ମଂତବ୍ୟ । ସମାଜର ଘୋର ଶବ୍ଦ ନଥିବା ନିର୍ଘଂଟୀୟ କାର୍ଯ୍ୟାବଳୀର ଏକମାତ୍ର ପ୍ରୋତ୍ସାହନ କେନ୍ଦ୍ର ହେଉଛି ଅର୍ଥ । ସବୁ ଶବ୍ଦ ଓ ସବୁ ଉତ୍ସପର ସୃଷ୍ଟି ସେଇଠି, ଯାହାବିନା ଜୀବନ, ଯୌବନ ଓ ପ୍ରକୃତିର ସବୁ ରମଣୀୟତା ଓ ମାଦକତା ନିରର୍ଥକ । 'ଫେରିବାଲା', 'ଦୁଆର', 'ଲଢ଼େଇ' ପ୍ରଭୃତି କବିତାଗୁଡ଼ିକ, ଜୀବନ ସଂପର୍କରେ ଏକ ଏକ ଦ୍ୟୋତକ ଭାଷ୍ୟର ବ୍ୟଂଜନା ଦିଏ । ଶୈଳୀ ଓ ବିଷୟ ଦୃଷ୍ଟିରୁ 'ଭିନ୍ନ ସ୍ୱାଦର କବିତା' ଏକ ନୂତନ ସ୍ୱାଦ ପରିବେଷଣ କରେ ।

କମଳାକାଂତଙ୍କର ପୂର୍ବବର୍ତ୍ତୀ କବିତା ସଂକଳନରେ ବିଷୟବସ୍ତୁ ହିସାବରେ ପ୍ରେମ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲା । ବର୍ତ୍ତମାନର କବିତା ସଂକଳନରେ ଏହିଧରଣର କବିତା ସୀମିତ ଏବଂ ସେ ସଂବଂଧରେ କବିଂକର ଅଭିବ୍ୟକ୍ତି କେତେକ ମର୍ମସ୍ପର୍ଶୀ ଚିତ୍ରକଳ୍ପ, ସୂଚନା ଓ ସଂକେତ ମଧ୍ୟରେ ପର୍ଯ୍ୟବସିତ । ଅପର ପକ୍ଷରେ ଆଧିଭୌତିକ (Metaphysical) ବିଷୟବସ୍ତୁର ଦ୍ୱାରଂ ସମକ୍ଷ ବୃଦ୍ଧି ପାଇଛି । 'ଅପେକ୍ଷା କେବଳ' କବିତାଟି ଜୀବନର ତ୍ରାଣକର୍ତ୍ତାଂକ ପାଇଁ ଦୀର୍ଘ ପ୍ରତୀକ୍ଷା । ବେଦନା ଜର୍ଜର ମନୁଷ୍ୟ ଜୀବନ ସଂଗ୍ରାମରେ ବ୍ୟର୍ଥ, କ୍ଲାଂତ ଓ ଅବସନ୍ନ ହୋଇ ସମସ୍ତ ବିଫଳତା ସତ୍ତ୍ୱେ ଆଶାକରି ଗୁହାଁ ବସିଥାଏ ମୁକ୍ତିର ଶେଷ ମୁହୂର୍ତ୍ତଟି ପାଇଁ, ଆସନ୍ନ ପ୍ରସବା ଦେବକୀ ଯେପରି ଅପେକ୍ଷା

କରି ବସିଥିଲେ ମୁକ୍ତିଦାତା କୃଷ୍ଣଙ୍କ ପାଇଁ । ଅନ୍ଧାରିଆ ଅରଣ୍ୟପରି ତମସାଚ୍ଛନ୍ନ ପଥ ଶେଷରେ ଜ୍ୟୋତିର୍ମୟ ରୂପରେ ସେ ଆସିବେ ହିଁ ଆସିବେ ।

"ସେ ଆସିବଇ ଆସିବ । ସେ ଆସିବ
କେଉଁ ବେଳାରେ, କେଉଁ ମୁହୂର୍ତ୍ତରେ କେଉଁ
ଛଟକର ପାଲଙ୍କରେ, ଗଙ୍ଗଶିଉଳିର ଚଉତ୍ରାରେ
ସେ : ବାଜିବ ଶଙ୍ଖ ମହୁରିର ନହବତ ।
କେବଳ ଯାହା ଧୈର୍ଯ ହରାଇଦିଏ
ମୋ ମନସ୍କ ଶୋକର ମୁଦ୍ରା, ଧ୍ୟାନସ୍ଥ
ଶିଖାର ତପସ୍ୟା । (ଅପେକ୍ଷା କେବଳ)

'କ୍ରୀତଦାସ' ଓଡ଼ିଆ ଜଣାଣର ଏକ ଆଧୁନିକ ରୂପ । କବିତାବର୍ଣ୍ଣିତ ଈଶ୍ବର ଏକ ସ୍ଥିର, ନିର୍ବିକାର, ସ୍ଥିତପ୍ରଜ୍ଞ ବୃଦ୍ଧ ଅଥଚ ପୁଞ୍ଜିବାଦୀ ମାଲିକ ଯେ କି ହୃଦୟହୀନ ଏବଂ କେବେ କେବେ ଛଳନାମୟ । ପୁରୁଷାନୁକ୍ରମିକ-ଭାବେ ତାଙ୍କର ଆଜ୍ଞାବହ କ୍ରୀତଦାସ, ମନୁଷ୍ୟର ଦୁଃଖ, ଯନ୍ତ୍ରଣା ଓ ପରିଶ୍ରମଜନିତ କ୍ଳାନ୍ତି ଓ ଅବସାଦ ପ୍ରତି ସେ ଉଦାସୀନ ଏବଂ ଅଥର୍ବ : 'ବୁଢ଼ାପରି ଡୋଳାଉଛି/ବଟବୃକ୍ଷ ଗୁଈର ପାହାଚେ ।' କବି ସାମନ୍ତ-ତାନ୍ତ୍ରିକ ଦାସତ୍ଵ ପ୍ରଥାର ଶରବ୍ୟ ହୋଇ ମୁକ୍ତିପାଇଁ କାକୁତିମିନତି କରିଛନ୍ତି—ଏକ ଅବୁଝା ମାଲିକ ପାଖରେ ।

ମନସ୍ବିତାର ଏକ ସୁନ୍ଦର ବିଶ୍ଳେଷଣ "କ୍ରମଶଃ ବର୍ଷା : ବିବିକ୍ତ ମନ ଓ ଈଶ୍ବର ।" ବର୍ଷଣ ମୁଖର ଦିନର ଉଦାସିଆ ପାଗରେ ଶୂନ୍ୟ ମନ ନେଇ ଚିନ୍ତାର ଜାଲବୁଣି ଗୁଳିବା ଏବଂ ତହିଁରେ ନାନା ଶ୍ଳେଷୋକ୍ତି ସାହାଯ୍ୟରେ ଈଶ୍ବରଙ୍କୁ ଅତି ନିବିଡ଼ଭାବରେ ଜଡ଼ିତ କରି ଏକ ବାସ୍ତବ ହାସ୍ୟଗମ୍ଭୀର ପରିବେଶ ସୃଷ୍ଟି କରିବା କବିତାର ବିଶେଷତ୍ଵ । ଏହାର ଅନ୍ତରାଳରେ ଫୁଟି ଉଠିଛି ମଣିଷର ଦାରିଦ୍ର୍ୟ, ନିଃସଙ୍ଗତା, ସ୍ଵାର୍ଥପରତା, କ୍ଷୁଧା ଓ ଦେହଜ କାମନା; ପୁଣି ପ୍ରକାଶ ପାଇଛି ଦୁଃଖୀମାନଙ୍କ ପାଇଁ ଗଭୀର ସମବେଦନା :

'ରକ୍ତର ମଣିଷ ହୋଇ ଅନ୍ୟର ଦୁଃଖକୁ'
ଆପଣା ରକ୍ତରେ ଫେଂଟି ଆପଣାକୁ ହସାଇବା...

ଈଶ୍ୱରଂକୁ ନିକଟତମ ସାଂଗ ବା ଜଗତ୍-ଦୋସ୍ତ ହିସାବରେ ଚିଂତା—କରିବାର ଗତାନୁଗତିକତା ପରିପଂଥୀ ଅଧିଭୌତିକ (Metaphysical) କଳ୍ପନାଟି ଆମୋଦ ଓ ଆନଂଦ ଦାୟକ—

'ହେ ପ୍ରଭୁ ତୁମେ ଆଜ ଗୋଟା ଗୋଟା ଉପାସରେ ବୁଲି ଘୁଂକୁଥିବ,
ତୁମେ ବୋଧେ ରାଗଟାରେ ହାଂଡ଼ିକୁଂଡ଼ ସବୁ ଛେଚୁଥିବ ।'

ପୁଣି ଅଂତର୍ନିହିତ ଶ୍ଳେଷ ଯୋଗୁ ଭାବଟି ଅତ୍ୟନ୍ତ ଗମ୍ଭୀରତା-ବ୍ୟଂଜକ ଓ ମର୍ମସ୍ପର୍ଶୀ :

'ଅଂତତଃ ତୁମକୁ ମୁଁ କହିରଖେଁ ଭଗବାନ୍, ତୁମେ ଯଦି ମର—
ମୁଁ ମରିବି ଧରି ତୁମ ଅଂଟା ଆଉ ବେକ ଓ ଗୋଡ଼କୁ ।

ଆବେଦନ ସଂକ୍ରମଣ ରୀତି ଅନୁସାରେ କେତେଗୁଡ଼ିଏ କବିତା ବ୍ୟଂଜନାତ୍ମକ । 'ସମୁଦ୍ର' କବିତାରେ ଚିତ୍ରକଳ୍ପ ସାହାଯ୍ୟରେ ସମୁଦ୍ର—ଉପରିସ୍ଥ ପବନ, ସମୁଦ୍ରର ଗର୍ଜନ, ମୌନତା, ବ୍ୟାପକତା, ତଥା ମନୁଷ୍ୟର ତୁଳନାତ୍ମକ ସ୍ୱାଧୀନତା ଓ ନିର୍ଭରଶୀଳତା ବିଷୟରେ ମୋଟାମୋଟି ବ୍ୟଂଜନା ସୃଷ୍ଟି କରାଯାଇଛି । ବସ୍ତୁର ଗୋଲକ ପ୍ରଭୃତି ଚିତ୍ରକଳ୍ପରେ ଆଧୁନିକ ଜୀବନରେ ଯୌନ ଆକର୍ଷଣର ବ୍ୟଂଜନା ଦିଆଯାଇଛି । 'ସୂର୍ଯ୍ୟମୁଖୀ' ଆଉ ଏକ ବ୍ୟଂଜନାମୁଖର କବିତା ଯହିଁରେ ଚିତ୍ରକଳ୍ପର ବିସ୍ତାରଣ ସତ୍ତ୍ୱେ ବ୍ୟଂଜନାମାନଂକର ଏକ ସମୀକରଣ କରାଯାଇଛି ।

—୪—

ଏହି କବିତା ଗ୍ରଂଥରେ କ୍ଷୁଦ୍ର କବିତା ଅପେକ୍ଷାକୃତ ଅଧିକ ସ୍ଥାନ ପାଇଛି । ଗଠନ ଓ ପ୍ରକାଶ ଭଂଗୀରେ କ୍ଷୁଦ୍ର କବିତାଗୁଡ଼ିକ କବିଂକର ସଫଳତାର ସ୍ୱାକ୍ଷର ।

ମୃତ୍ୟୁ ଓ ଜୀବନ, ଏ ଦୁଇଟି ବିସଂବାଦୀ ବିଷୟ—କିଂତୁ ଉପସ୍ଥାପନା ପ୍ରଣାଳୀ ସମାନ, ଭିନ୍ନବତ୍। 'ମୃତ୍ୟୁ' କବିତାଟିରେ ଗୋଟିଏ ମାତ୍ର ମୌଳିକ ଚିତ୍ରକଳ୍ପ 'କାଣିବିଲେଇ'ର ଆଖିକୁ (କାଣୀ ହୋଇଥିବାରୁ ସଂଭବତଃ ବିଭତ୍ସତା ଓ ଆକ୍ରମଣର ଏକାଗ୍ରତା ଅଧିକ) କେଂଦ୍ରକରି ଅନ୍ୟ ଗୌଣ ଚିତ୍ର ଭିଲ୍ଲମାନ ସନ୍ନିବେଶିତ କରାଯାଇଛି। ଠିକ୍ ଅନୁରୂପଭାବେ ଜୀବନକୁ ଲୁହ ଓ ଲହୁର ମୁଂଡ଼ିଲାଚରା ଏକ ବୃତ୍ତିରୂପେ ଗ୍ରହଣକରି ଅନ୍ୟାନ୍ୟ ଚିତ୍ରକଳ୍ପଗୁଡ଼ିକୁ ବୃତ୍ତିଟିର ପରିଧିସ୍ଥ ଓ ଗୌଣ କରାଯାଇଛି।

ଯୀଶୁ, କବି ଓ ମଣିଷ କବିତା ତିନୋଟି ଆଉ ଏକ ପର୍ଯ୍ୟାୟର। ସତପାଇଁ ମୁଂଡ଼କୋଡ଼ ହେଉଥିବା ସଚସଡିଆ, ମୁଦହୋଇଥିବା ପଦ୍ମ ଭିତରେ ବଂଧା ଭଅଁର ଓ ଉଇଁ ଆସୁଥିବା ସୂର୍ଯ୍ୟ—ଏ ତିନୋଟି ଚିତ୍ରକଳ୍ପ ବିଭିନ୍ନ। ମାତ୍ର ଏ ତିନୋଟିକୁ ରୈଖିକ ଗତିରେ ପରସ୍ପରର ସହାୟକ ଓ ପରିପୂରକ ହିସାବରେ ବ୍ୟବହାର କରି କବିତାଟିକୁ ଅନ୍ୟ ଏକ ପ୍ରକାର ଚିତ୍ର ହିସାବରେ ସଂଗଠିତ କରାଯାଇଛି। ହୃଦୟର ସ୍ପଂଦନ ସଦୃଶ ବିଷୟବସ୍ତୁଟି ପ୍ରତି ଛନ୍ଦରେ ସ୍ପଂଦିତ ହେଉଥିବାରୁ ବିସ୍ତାରଣ ଶୈଳୀ ନ ଥି ପରିବର୍ତ୍ତେ ଜୀବନର ବୈଚିତ୍ର୍ୟକୁ ପ୍ରତିପାଦିତ କରୁଛି। 'ମଣିଷ' କବିତାଟି ମଣିଷର ଅନ୍ତର୍ନିହିତ ଗୁଣାବଳୀର ଏକ ସାଂକେତିକ ବିରୋଧାଭାସ।

'ନିଆଁ' ଅଗ୍ନିର ଉତ୍ପତ୍ତି ସଂବଂଧରେ ଏକ ବୈଜ୍ଞାନିକ କଳ୍ପନା, ଯାହାକି କବିତାରେ ରୂପାଂତରିତ।

'ସତ୍ୟ' କବିତାଟି ସତେ ଯେପରି ଗୋଟାଏ ମାର୍ବଲ ସତ୍ୟ ପରି ନିଦା, ସଂକ୍ଷିପ୍ତ ଓ ସୂକ୍ଷ୍ମାମୂର୍ତ୍ତ।

—୭—

ଗତ ତିନି ଦଶନ୍ଧି ଧରି ଆଧୁନିକ କବିତାର ସାଧନା କ୍ଷେତ୍ରରେ ଯେଉଁ ପରୀକ୍ଷଣ ହୋଇ ଯାଇଛି ତାହାର ଉଦ୍ଦେଶ୍ୟ ହେଲା କବିତାକୁ

ଆଧୁନିକ ଜୀବନ ସହିତ ଅଂଗୀଭୂତ କରିବା, ଆଧୁନିକ ବାଗ୍‌ଧାରାରେ ପ୍ରକାଶ କରିବା ଏବଂ ସର୍ବୋପରି ଏହାକୁ ଆଧୁନିକ ଚେତନାର ବାହକ ରୂପେ ପ୍ରୟୋଗ କରିବା । ଏହି ଲକ୍ଷ୍ୟକୁ ଅବ୍ୟାହତ ରଖି କବିତା ନିଜର ପଥକୁ ଆବିଷ୍କାର କରି ଚାଲିଛି । ବିକାଶର ଏହି ଘଡ଼ିସନ୍ଧି ବେଳାରେ କବିତାର ସବୁଠାରୁ ବଡ଼ ପରୀକ୍ଷା ହେଉଛି ତାହାର ଆବେଦନର ଗଭୀରତା ଓ ସଂକ୍ରମଣଶୀଳତା । ଯେଉଁଠି କବିତାର ଉଦ୍ଦେଶ୍ୟ ଆବେଦନରେ ସଂଗୀତର ଧର୍ମକୁ ଅବଲଂବନ କରିବା, ଦୃଶ୍ୟମାନ ବାସ୍ତବର ଅଭ୍ୟଂ-ତରରେ ଲୁଚିରହିଥିବା ଅବିଶେଷକୁ ( Abstract ) ବ୍ୟଂଜନାରେ ରୂପାୟିତ କରିବା, ସେଠାରେ ଗୁହ୍ୟାଚ୍ଛନ୍ନତା, ପ୍ରାଂଜଳତାର ଅଭାବ ଏପରିକି ଅସ୍ପଷ୍ଟତା ବି ଗ୍ରହଣୀୟ ହୋଇ ପାରେ । କାରଣ ଏକ ସ୍ତରୀୟ କାବ୍ୟିକ ଅନୁଭୂତି ଏପରି ନିବିଡ଼ ଓ ଅବମୂର୍ତ୍ତ ଯେ ବ୍ୟଂଜନା ଓ ସୂଚନା ବ୍ୟତିରେକେ ଭାବ ସଂକ୍ରମଣର ଅନ୍ୟ ଉପାୟ ସଂଭବ ନୁହେଁ । କିଂତୁ କେଉଁଠି, କେବେହେଲେ ଆବେଦନର କ୍ଷୀଣତା, ସଂଦିଗ୍ଧତା, କିଂବା ଅବରୋଧ ଗ୍ରହଣ ଯୋଗ୍ୟ ନୁହେଁ ।

ପ୍ରୟୋଗବାଦୀ କମଳାକାଂତଙ୍କ କବିତାରେ ଏପରି ଅସ୍ପଷ୍ଟତା ଓ ସଂଦିଗ୍ଧତା ଏବେ ବି ବିରଳ ନୁହେଁ । 'ଅଜ୍ଞାତବାସ'ରେ ସମୟ ଓ ମନର ଅଂଧାରୁଆ ଅରଣ୍ୟଭେଦକର କାବ୍ୟାନୁଭୂତିଟିକୁ ହୃଦୟଂଗମ କରିବା ସହଜ ନୁହେଁ; 'ଅଧୀଶ୍ୱର' କବିତାର ବୌଦ୍ଧିକତା ଅନାୟାସରେ ଅନୁଭୂତ ହୁଏନାହିଁ ଏବଂ କେତେକ କବିତାରେ ଚିତ୍ରକଳ୍ପର ବିସ୍ତାରଣ ଫଳରେ ଅନୁଭୂତିର ସମୀକରଣ କରିହୁଏ ନାହିଁ । ଏପରି କେତେକ ସାମାନ୍ୟ ବ୍ୟତିକ୍ରମକୁ ବାଦ ଦେଲେ ପ୍ରାୟ ସମସ୍ତ କବିତା ଆବେଗ ମୁଖର ଓ ଆବେଗ-ସଂପୃକ୍ତ । ଗଠନ ଭଂଗୀ ଓ ପ୍ରକାଶ ଭଂଗିମାର ସୀମା ପୂର୍ବ-ଠାରୁ ଅପେକ୍ଷାକୃତ ବ୍ୟାପ୍ତ । ଏକ ପ୍ରାଂତରେ ପଲ୍ଲୀଗୀତ ଢାଂଚାରେ ଲିଖିତ 'ଭିନ୍ନ ସ୍ୱାଦର ଗୋଟିଏ କବିତା' ତ ଅନ୍ୟ ପ୍ରାଂତରେ "କ୍ରମଶଃ ବର୍ଷା, ବିବିକ୍ତ ମନ ଓ ଈଶ୍ୱର" କବିତାରେ ଏଲିୟଟୀୟ ପ୍ରତିଧ୍ୱନି । ବାଗ୍‌ଧାରା ପ୍ରୟୋଗରେ କେଉଁଠି ନାଟକୀୟ ଭଂଗୀ [ କି ଜବାବ ଦବ ବିମଳା ? ] ତ କେଉଁଠି କଥ୍ୟଶୈଳୀ [ ମୁଁ ନାଚୁଚି ତୋ/ଶତାବ୍ଦୀର

ଭସମାନ ତଷାଣରେ/ଯେ: ଇତ୍ୟାଦି ], ପୁଣି କେଉଁଠି ନାଟକୀୟ ଓ କଥ୍ୟ ପ୍ରଣାଳୀର ସମ୍ମିଶ୍ରଣ [ ରେ ବାପ୍ପା, ରେ ମନୁଆ ଇତ୍ୟାଦି ] ଭଷା ପ୍ରୟୋଗରେ ଦେଶଜ ଶବ୍ଦର ଅଭିବ୍ୟକ୍ତିମତ୍ତା ଓ ସଂଭ୍ରାଂତ ଶୈଳୀର ଗାଂଭୀର୍ଯ୍ୟ ଉଭୟର ସମାବେଶରେ ଏକ ସାବଲୀଳ ଓ ବଳିଷ୍ଠ ମାଧ୍ୟମ ସଂଗଠିତ ହୋଇଛି ।

ଚିତ୍ରକଳ୍ପ ପ୍ରୟୋଗରେ କମଳାକାଂତଂକର ସିଦ୍ଧି ସ୍ୱାଗତ-ଯୋଗ୍ୟ । ପ୍ରାୟ ପ୍ରତ୍ୟେକ କବିତାରେ ଚିତ୍ରକଳ୍ପର ବର୍ଣ୍ଣିକଣା ପାଠକର ଅନୁଭୂତିକୁ ଏକ ଅପୂର୍ବ ରଂଗରେ ରଂଗୀଣ କରିଦିଏ । ତାହାର ଉଦା-ହରଣ ଦେବା ପରିବର୍ତ୍ତେ କୌଣସି ଗୋଟିଏ କବିତାକୁ ଲକ୍ଷ୍ୟ କରିବାହିଁ ବିଧେୟ ।

ଚିତ୍ରକଳ୍ପ ତାତ୍ପର୍ଯ୍ୟ ସଂପର୍କରେ ଗୋଟିଏ ଦୃଷ୍ଟାନ୍ତ,

"ମୁଁ ଅବିକା ଝୁଲିଗଲିଣି ଝୁଲୁଉଛି
ମୋ ଚୈତ୍ରିକ ଚେତନାର
ନିଷ୍ଫଳ ଖୁଂଟିରେ ।" (ଅଧୀଶ୍ୱର)

ଚୈତ୍ରିକ ଚେତନାଦ୍ୱାରା ବୌଦ୍ଧିକତାର ସୂଚନା କେତେଦୂର ତାତ୍ପର୍ଯ୍ୟ-ପୂର୍ଣ୍ଣ ହୋଇଛି ତାହା ସଚେତନ ପାଠକ ମାନେ ବିଚାର କରିବେ । ଅପରୂପ ଚିତ୍ରକଳ୍ପ ଯୋଗୁ ହିଁ କେତେକ କବିତାର ବ୍ୟଂଜନା ପାଠକ ଚିତ୍ତକୁ ସ୍ପର୍ଶ କରେ । ଚିତ୍ରକଳ୍ପ ଗୁଡ଼ିକ ବିଭିନ୍ନ ଇଂଦ୍ରିୟ—ପ୍ରତ୍ୟୟର ଅନୁଭବ ସୃଷ୍ଟି କରେ । ପୁଣି ପ୍ରୟୋଗ ପ୍ରଣାଳୀରେ ଦ୍ୟୋତକତା, ବ୍ୟାପକତା ଏବଂ ମୌଳିକତାର ସୂଚନା ମଧ୍ୟ ଦିଏ । କିଂତୁ ଠାଏ ଠାଏ ଚିତ୍ରକଳ୍ପର ବିସ୍ତାରଣ ଯେଉଁଠି ତାତ୍ପର୍ଯ୍ୟ ହରାଏ, ସେଠାରେ ଅସ୍ପଷ୍ଟତାର କାକଜ୍ୟୋତ୍ସ୍ନା ସଂଦିଗ୍ଧତାର ବାତାବରଣ ମଧ୍ୟ ସୃଷ୍ଟି କରେ ।

ଆଧୁନିକ କବି ହିସାବରେ କମଳାକାଂତଂକର ଅନ୍ୟତମ ବୈଶିଷ୍ଟ୍ୟ ତାଂକର ଶବ୍ଦଭଂଡ଼ାର ଏବଂ ସେଗୁଡ଼ିକର ଆଲଂକାରିକ ଗ୍ରଂଥନ

ପ୍ରକ୍ରିୟା । ତାଂକର କବିତା ପ୍ରାଚ୍ୟ ଓ ପାଶ୍ଚାତ୍ୟ ଅଳଂକାର ଶାସ୍ତ୍ର ଅନୁମୋଦିତ ବିଭିନ୍ନ ଅଳଂକରଣ ପ୍ରକ୍ରିୟାର ଏକ ଆଧୁନିକତମ ପ୍ରୟୋଗଶାଳା । ଚିତ୍ରକଳ୍ପ ପ୍ରୟୋଗରେ ସେ ଆଧୁନିକତା ଦାବୀ କରନ୍ତି । ଯୁବତୀର ବକ୍ଷୋଜ ଲାବଣ୍ୟକୁ ଚକାଡ଼ୋଳା ସହିତ ତୁଳନା କରିବା ଦ୍ୱାରା (ସମୁଦ୍ର) ଆଧୁନିକତାର ସୂଚନା ଦେବା ସଂଗେ ସଂଗେ ସେ ନିର୍ଭୀକତାର ମଧ୍ୟ ସୂଚନା ଦିଅଂତି । ପୁଣି ଅତି ନିଃସଂକୋଚ ଭାବରେ ବିଭତ୍ସତାର ବି ସୂଚନା ଦେଇ (ଜଭ) ସ୍ୱୀକୃତ ରୁଚିବୋଧ ଓ ଗତାନୁ-ଗତିକ ଭବ୍ୟତା ବିରୁଦ୍ଧରେ କଠୋର ବିଦ୍ରୋହ କରିବାକୁ ପଶ୍ଚାତ୍‌ପଦ ହୁଅଂତି ନାହିଁ ।

କମଳାକାଂତ ଜଣେ ଏକନିଷ୍ଠ କୃତିପ୍ରବଣ ସାଧକ ଓ କବି-ହୃଷ୍ଟିର ଅଧିକାଂଶ ଏହି । ନିରବଚ୍ଛିନ୍ନ ସାଧକଂକ କବି ପ୍ରତିଭାର ଶ୍ରୀ ଓ ସମୃଦ୍ଧି କାମନା କରେ ।

ତ୍ରିଲୋଚନ ମିଶ୍ର
ଅଧ୍ୟକ୍ଷ, ଭଦ୍ରକ କଲେଜ

# ଯଦି କିଛି କହିବାର ଥାଏ

କବିତା ଲେଖିବା ଯାହା ପ୍ରେମ କରିବା ସେୟା । ପ୍ରେମର ଠିକ୍ ମାନେ ବୁଝିବା ଓ ବୁଝାଇବା ଯେମିତି ବଡ଼ କଠିନ, କବିତା ସମ୍ପର୍କରେ ନିର୍ଦ୍ଦିଷ୍ଟ ସଂଜ୍ଞାର ସୀମାରେଖା ନିର୍ଣ୍ଣୟ କରିବା ବି ସେମିତି ବଡ଼ ଦୁରୂହ । ମୋ ଦୃଷ୍ଟିରେ ମୋ କବିତାଇଁ ତା ନିଜର ସଂଜ୍ଞା, ତା ନିଜ ସ୍ଥିତି-ସ୍ଥାପକତାର ସ୍ୱୟଂ-ସଂପୂର୍ଣ୍ଣ ଭାସ୍କର୍ଯ୍ୟ । କବିତା ସୃଷ୍ଟି, ତାର ପ୍ରକୃତି, ତାର ବ୍ୟାପ୍ତି ଓ ମହାନତା ପାଇଁ ଆଉ କିଛି ଲୋଡ଼ା ଥାଉ ବା ନ ଥାଉ, ଲୋଡ଼ା ଗୋଟାଏ ବିଶୁଦ୍ଧ, ଆତ୍ମୀୟ ହୃଦୟ ! ଏ ହୃଦୟପାଇଁ ହୃଦ୍ୟତା ଆପଣାଛୁଏଁ ଆସେ, ଆପେ ଆପେ କବିଟି ତା ନିଜ କବି-ସତ୍ତାର ଭିତରେ ଘର ବାଆଁକୁ ଭେଟିଯାଏ । କେତେବେଳେ କେଉଁ ଛଟକରେ ଏ ବାଆଁର ଦର୍ଶନ ଘଟେ ତା' କେବଳ କବିତାକୁହିଁ ଜଣା । ତେଣୁ କବିତାଇଁ ମୋ ଦୃଷ୍ଟିରେ ଶୁଦ୍ଧ ଆତ୍ମାର ଉଚ୍ଚାରଣ (ଯଦିଓ ସାଧାରଣ ଅର୍ଥରେ ଆତ୍ମା ଶୁଦ୍ଧ) । ଏଇ ଉଚ୍ଚାରଣକୁ ଦିବ୍ୟ ସୌନ୍ଦର୍ଯ୍ୟର ସମୀପସ୍ଥ କରିବାର ପ୍ରଚେଷ୍ଟା ସତ୍ କବିର ଧର୍ମ । ମୁଁ ସତ୍ କବି ନୁହଁ ! ପ୍ରିୟ ପାଠକେ, ମୁଁ ଆପଣମାନଂକୁ ଭୁଲାଉନାଇଁ । ମୁଁ କବିତାଇଁ ଲେଖିଚି ଓ କବିତାର କଥାଇଁ କହୁଚି, ଯାହାକୁ ଆପଣମାନେ କହିପାରଂତି ଗୋଟାଏ ମେଜାଜ୍, ଗୋଟାଏ ଖେଆଲ ବା ଆତ୍ମ-ଅଭିବ୍ୟକ୍ତିର ଗୋଟାଏ ନିଷ୍କପଟ ଚିପଚିହ୍ନ ! !

ପ୍ରାୟ ମୋର ସବୁ ଗ୍ରଂଥରେ ଗୁଂଥିଚି, ଗୁଂଥିବାର ଚେଷ୍ଟା କରିଚି ନିଜ କଥା, ଆପଣା ଚିହ୍ନା ପାଣି ପବନ, ନିଃଶ୍ୱାସ ପ୍ରଶ୍ୱାସ ଓ ଆପଣମାନଂକ ଅଂଗରେ, ଆତ୍ମାରେ ଚରି ଆତ୍ମସ୍ଥ ହୋଇଥିବା କଥା । ପ୍ରତିଟି ମଣିଷ ପାଣର ଥର ଥର, କଂପିତ ଦୁଃଖ ସୁଖର କାଳିକହ୍ନର କଥା । ଯାହା ସଭିଏଁ ଅନୁଭବ କରଂତି, ରକ୍ତରେ ଆଉଟଂତି, ଅଥଚ କହିବାକୁ,

ପ୍ରକାଶ କରିବାକୁ ଇଚ୍ଛାଥିଲେ ବି କିଛି ପାରୁନାହିଁ ନୂଆ ବା କହିବାପାଇଁ ଭାଷାର ଭଣ୍ଡାରଘରର ଜମାଟ ଅନ୍ଧାରକୁ ମନ୍ଥିଲାବେଳେ କାକୁସ୍ଥତାର ଝାଳରେ ବୁଡ଼ି ଯାଉଛି ।

ଏ ଗ୍ରନ୍ଥର କବିତା ସବୁ ବିଭିନ୍ନ ମେଜାଜର, ବିଭିନ୍ନ ସ୍ୱର ଓ ସ୍ୱାଦର, ଭାବ ଓ ଭଙ୍ଗୀର । ଆପଣମାନଙ୍କ ମେଜାଜ୍ ନେଇ ଲେଖା, ମୋର ବି । ରସଗ୍ରାହୀ ପାଠକଙ୍କ ହାତକୁ ଗୁଚ୍ଛା ବହିଟିଏ ବାସ୍ନାଭରା ଉତ୍ତାପ ନେଇ କିଂଚିତ୍ ସ୍ପର୍ଶାତୁର କଲାବେଳେ ଓ ଏଇ ଉତ୍ତାପ ଆଖିର ବର୍ତ୍ତାଳ ଦେଇ ମନ ଏବଂ ହୃଦୟକୁ ଭେଦିଲାବେଳେ ବିଚରା କବିଟି ସମ୍ଭବତଃ ଜଡ଼-ଭୂତ-ମୂର୍ତ୍ତି ପାଲଟି ଯାଏ । ଏ ପ୍ରକାର ଅସହାୟତାଠାରୁ ବୋଧେ କବି ପକ୍ଷରେ ଅଧିକ କିଛି ଗୌରବ ନାହିଁ !

ନିଷ୍ଠୁରତାକୁ ମଣିଷ ସହି ପାରେନା । ନିଷ୍ଠୁରତା ଗୋଟାଏ ବୋଝ । ଗୋଟାଏ ପ୍ରେତ । ଗୋଟାଏ ଲୋମଶ କାଳର ବଜ୍ରକଠିନ ଜାବ । ଏଥିରୁ ବର୍ତ୍ତିବା ସହଜ ନୁହେଁ । କିନ୍ତୁ କବିତା ଏଥିରୁ ମୁକ୍ତି ଦିଏ । ଏଥିପାଇଁ 'ଅନ୍ତତଃ ନିଷ୍ଠୁର'ର ସୁଅ କାଟି ଗୀତ ଗାଉଛି 'ରତି' ।

ଅଧ୍ୟକ୍ଷ ଶ୍ରୀଯୁକ୍ତ ମିଶ୍ରଙ୍କୁ ଧନ୍ୟବାଦ । ତାଙ୍କ ସମୀକ୍ଷାର ନିଜସ୍ୱ ଦୃଷ୍ଟିଭଙ୍ଗୀର ସ୍ୱାତନ୍ତ୍ର୍ୟ ଏ ଗ୍ରନ୍ଥଟିକୁ ମହିମାନ୍ୱିତ କରିଛି । ମିଛ କି ସତ ତାର ପୁନଃବିଚାର କରନ୍ତୁ ଆପଣମାନେ ।

ପ୍ରାୟ ସବୁ କବିତା ବିଭିନ୍ନ ସମୟରେ, ବିଭିନ୍ନ ମାସିକ ଓ ସାମୟିକ ସାହିତ୍ୟ ପତ୍ରରେ ପତ୍ରସ୍ଥ ହୋଇଥିଲା । ସଂପାଦକମାନଙ୍କୁ ବଧେଇ ।

ପ୍ରକାଶକ ଶ୍ରୀଯୁକ୍ତ ସହଦେବ ପ୍ରଧାନ, ମୋର ପୂଜ୍ୟ ସାର୍ ଡକ୍ଟର କୁଞ୍ଜବିହାରୀ ଦାଶ, ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ ଓ ସମ୍ମାନନୀୟ କବି, ସମାଲୋଚକ ଶ୍ରୀଯୁକ୍ତ ଚିନ୍ତାମଣି ବେହେରାଙ୍କୁ ମୋର ଅକୁଣ୍ଠ ସାଧୁବାଦ । ଏମାନଙ୍କ ଉତ୍ସାହ ଓ ସଦିଚ୍ଛା ଏ ଗ୍ରନ୍ଥକୁ ଅନେକ କିଛି ଭରସା ଦେଇଛି ।

ଅସ୍ପୃଷ୍ଟା ନିରୁପମା ଗ୍ରଂଥଟିର ପ୍ରକାଶନ ପାଇ ବାର ବାର ତାଗିଦ୍ କରିଚ । ତା'ପାଇଁ ଗୋଲକଧଂଦା ନିବେଦିତ ହେଉ ! ଶ୍ରୀମାନ୍ ନୃସିଂହ ଷଡ଼ଂଗୀ, ଅର୍ଜ୍ଜୁନ ପୃଷ୍ଟି, ଗୌତମ ଜେନା, ଗୀତା ମହାଂତି, ବିଦ୍ୟୁତ୍ ଦାସ ଓ ରମେଶ ବିଶ୍ୱାଳ ଧନ୍ୟବାଦ ଦାବୀ କରଂତି । ଉତର ଆପଣମାନେ ନିଗୁଆଳ, ଭେଲରୁ ମୁଁ କଳାକାର । ତେଣୁ ବିଫଳତା ତକ ମୋ ଗୋଳାରେ । ଆଉ ଅଧିକ କ'ଣ ବା !

**କମଲାକାଂତ ଲେଂକା**

# ସୂଚୀ

| ବିଷୟ | | ପୃଷ୍ଠା |
|---|---|---|
| ୨୭ । ସୂର୍ଯ୍ୟାସ୍ତ | ... | ୬୧ |
| ୨୮ । ତୀର୍ଥକ୍ଷେତ୍ର | ... | ୬୩ |
| ୨୯ । ନିକଟ ସଂପର୍କ | ... | ୬୫ |
| ୩୦ । ଅଧୀଶ୍ୱର | ... | ୬୭ |
| ୩୧ । ନିଜ ସପକ୍ଷରେ | ... | ୬୯ |
| ୩୨ । ମୁଁ | ... | ୭୨ |
| ୩୩ । ଅବିବେକୀ | ... | ୭୪ |
| ୩୪ । ମରଣ ଜାତକ | ... | ୭୭ |
| ୩୫ । ଆଦିବାସୀ ପଲ୍ଲୀରେ ସକାଳ | ... | ୮୦ |
| ୪୬ । କ୍ରମଶଃ ବର୍ଷା, ବିବିକ୍ତ ମନ ଓ ଈଶ୍ୱର | ... | ୮୨ |



# ଗୋଲକ ଧଂଦା

( ୧ )

ଭଲ କରି ଜାଣେ ମଣିଷ
ଭୁଲ ପାଏ କାହିଁକି ପାପକୁ,
କାହିଁକି ସବୁ ରଂଗଛଡ଼ା, କାଡ଼ିଛଡ଼ା, ଘର୍ ନିସ୍ ଗଂଧଉଡ଼ା
ପୁରୁଣା, ମସିଆ ଦିନର
ବେକଭଂଗା ରହିବା ଠାଣିକୁ, ଭଲକରି ଜାଣେ
ମଣିଷ ତା ଭିତର ଘର ଠାକୁର
ରହିଥାଏ କେମିତି ତା' କ୍ଷୟ କ୍ଷତିର, ଲାଭ ଲୋକସାନର
ଶରତ କ୍ଷେତକୁ, ବଗିଚାରେ ଫୁଟି ଆସୁଥିବା
ଫୁଲଟିର ନିର୍ଲୋଭ କଢ଼କୁ । ମଣିଷ
ଜାଣେ ଭଲକରି କାହିଁକି
ସେ ଭଲପାଏ ତା' ଦୁଃଖର ଉଜାଣି ତଳକୁ
ତା କୁଟାକାଠିର ସଂସାର
ଅଂଧ ପାଗଳାମିର ଖେଳାସ
ତା' ପୌରୁଷର ସ୍ତୋତ୍ର ପବନରେ ପଢ଼ୁଥିବା ବେଳେ,
ଭଲକରି ଜାଣେ କବି
କାହିଁକି ଓ କେଉଁମିତି ଛଟପଟ
ଈଶ୍ୱରଂକ ଯାବତୀୟ ସୁଂଦର ସୃଷ୍ଟିର
ଆକର୍ଷଣ, ରହସ୍ୟ ଜବଳେ !

( ୨ )

ମୁଁ ନିଶ୍ଚିତ ସେ ଦିନ ଡାକି
କହିଲି ସ୍ତ୍ରୀଂକୁ ଯେ : ଆଜିକାଲି

ତମକୁ ଦେଖିଲେ କ୍ରୋଧ ଚଢ଼େ ମଗଜକୁ
ଓ ତମ ଚୁପ୍‌ଚାପ୍ ମୁହଁଙ୍କ ଆକାଶ
ଲଢି ପଡ଼େ ଆବେଗରେ, କବିତାରେ, ସାଂଘାତିକ
ବୋଝର ମଥାରେ ; କିଂତୁ ତମେ ଜାଣିରଖ
ଧାଡ଼ିଟିଏ ଆସେ ନାହିଁ, ପଦଟିଏ ପଇଟେ ନି
ମନକୁ ବା କଲମକୁ;
ଟିକେ ଶୁଥ ବେଶଭୂଷା ପାଖାପାଖି, ଲଗାଲଗି
ଲୋଟଣି ନ ଦେଲେ, ବା ତୁମ ଅଂତର୍ଧାନ
ନିଃଶ୍ୱାସର ଘୋଡ଼ା ଚଢ଼ି ଫାଂକା ଏକ ଦଡିଆର
ନିର୍ଜନତା ସଂଖୁଳି ନ ନେଲେ ! ସେ କହିଲେ :
ତହବାମି, ମସ୍ତରମ ମ ତାଲ କଥାକୁ
ବା ବିଶ୍ୱାସ କାହାର ? ମାତାଲ ନ ହେଲେ
କେଇ ଇତସ୍ତତଃ, ବିଶୃଂଖଳ, ବିଶୁଦ୍ଧ ପ୍ରେମରେ
ରସାଳ କାବ୍ୟରେ ହଜେ ନାହିଁ—
ଚଇତନ୍ୟ ବୁଢ଼ା ବୟସରେ,
ଅଥବା ବିପନ୍ନ ମୁହେଁ ଫୁଟେ ନା ରଜନୀଗଂଧା,
କାମିନୀ ଓ ଅଗଣାର ତରଟ ଟଗର ।।

( ୩ )

ମୁଁ କଣ ଭାବିଥାଂତି ସ୍ତ୍ରୀଂକୁ ସେ :
ନ ଥିବାରୁ ଗୋଟେ ହେଲେ ତରଟ
ଅଗଣାର ନୃଶଂସ ଖରାରେ, ବିଚକ୍ର ଓ ନିଛାଟିଆ
ମୁହୂର୍ତ୍ତଗୁଡ଼ାକ ଆପେ ଆପେ ଠେଲି ଦେଲେ
ଚଛା ବଛା କଠୋର ଶବ୍ଦଂକୁ ଓ ପର ମୁହୂର୍ତ୍ତରେ
ଠିକ୍ ଠିକ୍ ହଜଦିଆ ଖରାର ବଖରା
ପୂଟିଗଲା ଆଲୁଅରେ, ଶୁଦ୍ଧ ବିବେକରେ
ଈଶ୍ୱରଂକ ବିଂଧାଣିଦାଣିଆ
କ୍ରୁଶବିଦ୍ଧ ହେଲାବେଳେ
ମାଇପିଂକ ଫିସ୍ ଫାସ୍ ଗୁହାଣିର
ଶୂନ୍ୟ ଆକାଶରେ । ଏତେବେଳେ

( ୪ )

ଘଡି ପାହେ । କୁଆ ଓଂ କୋଇଲି
ଭଂଗିଦିଏ ମଗ୍ନତା ଓ ଭରପୂର ଭଂଡାରପ
ଜଗୁଆଳି ଫେରିଆସେ ପୁନର୍ବାର
ନୃଶଂସ ସତ୍ୟର ବିଚ୍ ବଜାରକୁ । ସେ କିଂତୁ
ଚୁପ୍ ରହ୍,' ଶୁଆପରି ଘୋଷୁଥାଏ
ଝଣ ଝଣ୍ ସମୟର ବ୍ୟଗ୍ରତା ଓ ଆସନ୍ନ ସଂଜରେ
ଭକୁଆ ଦୃଷ୍ଟିରେ ପୋଛେ ବୈରାଗ୍ୟର ଝାଳ
ଭଲ କରି ଜାଣେ କାଙ୍କି
ଉଲଗ୍ନ ହୁଏ ପୁରୁଷ
ଦେଖି ଦେଲେ ରୂପବତୀ ନାରୀର କଂକାଳ ।

(ଯାର ଅନ୍ୟ ନାମ ହୁଏ ତ ମୃତ୍ୟୁ ଏବଂ ଏ ମୃତ୍ୟୁକୁ ଭଲ ପାଏ
ମଣିଷର ସବୁ ପ୍ରେମ, ସବୁ ସ୍ନେହ, ସବୁ ସଖ୍ୟ·ତତ୍ତ୍ୱର ଆସର)

( ୪ )

ଆସର ଭାଂଗେ ନାହିଁ ସହଜରେ ।
ସରେ ନାହିଁ ଆମରିର ନାନାବୟା
ଗୀତର ସିଂଫୋନି, ସରେ ନା ବି
ସହଜରେ ଫୁଲତୋଳା, (କାରଣ ଫୁଲ ଫୁଟେ,
ଫୁଲ ଝଡେ, ପୁଣି ଫୁଟେ. ଫୁଟିବାଇଁ ଧର୍ମ ଏ
ଫୁଲର) ଯାହା ଖାଲି ବଗିଚ୍ଚର ନିରୀହ ଗଛଂକୁ
ବହେ ବହେ କାଲୁବାଲୁ କରିବାଇଁ ସାର ।
ଯାହା ଖାଲି ଥଳକୂଳହୀନ ହ୍ରଦ
ମାଝି ଚଉଁରରେ ଠିଆ ହେଇ
ପଦ୍ମତୋଳା ବୋଲିବା ଓ କ୍ଷତର ଚିହ୍ନକୁ
ପୁନର୍ବାର ନାଗୁଣୀର ମୁହଁ ଯୋଖିଦବା ।
ଆସର ଭାଂଗେ ନାହିଁ ସହଜରେ
ପୂଯ କେତେ ସତିଗଲେ ସମଗ୍ର ବଜାର;
ବଂଶୀ ଚରିତ ଜାଣେ ଧୁଁଆମାଟି, ଶୂନ୍ ଚଢେଇ,

( ୩ )

ଓ ଟୁନ୍ ଟୁନ୍ କଳସୀର
ନିଶବ୍ଦ ବୈଭବ ।।

( ୫ )

ବେଶ୍, ଠିକ୍ ଅଛି । ଏତେ ବଡ
ଏତେ ଭକ୍ଷ୍ୟ, ଏତେ ନିରାପତ୍ତା ଲୋଡ଼ା ନାହିଁ ।
ଲୋଡ଼ା କ'ଣ ? ଖାଲି ଶୂନ୍, ୦ ୦
ଲୋଡ଼ା ମୋର, ତୁମର, ସଭିଙ୍କର । ଆତୁର ସଂଜରେ
କିଏ ଜାଣେ ? ସଭିଏଁ ତ ଶାଗୁଆର
ନିର୍ଲୋଭ ହିଂସାରେ ନିମଜ୍ଜିତ, ନିଶାଖୋର
ଆଲୁଅରେ, କିଏ ବା ଅଂଧାରେ ।
ତାହା କାଂଧ ଭାଙ୍ଗିଯାଏ ପର୍ଶୁ ମନ୍ତ୍ର, ଅତିଥି ସତ୍କାରେ ।।

ତାହାର ବା ଖାଲି ଶୂନ, ୦ ୦
ଦୃଶ୍ୟ ଏବଂ ଅଦୃଶ୍ୟର ଗୋଲକ ଧଂଦାରେ ।।



# ଫେରିବାଲା

ରାତି ନ ପାହୁଣୁ, କୁଆ ନ ରାବୁଣୁ
ଛୁଆଙ୍କ କାନ୍ଦରେ ମା'ମାନଙ୍କରନିଦ
ନ ଭାଙ୍ଗୁଣୁ, ପାଣିଚିଆ ସ୍ୱପ୍ନର ହସରେ
ସକାଳ ଖବର ପିନ୍ଧି ନ ସିଝୁଣୁ ଶୁଭେ
ଡାର ଡାକ, ଆଟର ବାବୁ, ଫିଙ୍ଗି ଦେ
ତୋ ଆଳସ୍ୟର ଉଷୁମ ପୋଷାକ, ଭାଙ୍ଗି ଦେ
ତୋ ନିଦୁଆ ଆଖିର ଗଜଦନ୍ତ ପଲଙ୍କର
କୋମଳ ଅନ୍ଧକାର ଏବଂ ଝାଡ଼ିଝୁଡ଼ି ଦେ
ତୋ ଝିଲିମିଲି ଜରିକନାର ବଟୁଆରୁ
ଗତାନୁଗତିକ ଭାବେ ସୁରକ୍ଷିତ ଓଷଦ, ଗନ୍ଧ ଓ
ଚେଟ୍ମୈନ । ତୋ କୁହୁକର ଅସ୍ଥିର ଭୂତକୋଠିରୁ
ଡେଇଁପଡ଼ ଢଙ୍କ୍‌କରି ଉଦ୍‌ବାହୁ
ଜୀଅନ୍ତା ରାକ୍ଷସର, ହଲ୍ଲାର ସମୁଦ୍ରକୁ,
ଜଳିପୋଡ଼ି ଯାଉଥିବା ବାଲିର ବିରାଟ
ଚଉତରାକୁ ଯେ ଆଉ ନିଦ୍ରିତ ଆଖିପତାରେ
ଭିଡ଼ ବାନ୍ଧିବ ନାହିଁ ରକ୍ତ ମାଂସର ସିମୋନି,
ସମସ୍ତ ଭୁଲ୍‌ଭଟକାର ପ୍ରାର୍ଥିତ କ୍ଷମା
ଭୁଲାଇ ଦବ ନାଇଁ ଗ୍ଲାନି ଓ ବିତର୍କର ଆସ୍ୱାଦନା !

ରାତି ନ ପାହୁଣୁ, କୁଆ ନ ରାବୁଣୁ
ଏମିତି ଚେତାଇ ଦିଏ ଭକ୍ତକୁ କିଏ ?

ଏମିତି ତତାଇ ଦିଏ ରକ୍ତର ମୂଢ଼ତାକୁ କିଏ ?
ଏମିତି ମୁଖରିତ କରେ କିଏ ରକ୍ତର ତୁଷ୍ଟିକୁ,
ମଗଜ ଭିତରେ ବସା ବାନ୍ଧିଥିବା
ବୁଦ୍ଧି ଓ କୌଶଳର ଦ୍ରୁତ ଗୋଦର ମୌନତାକୁ
ଗାରୁଡ଼ି ମନ୍ତ୍ରର ଆଓ୍ୱାଜରେ ଫଣା ତୋଳେ
ରକ୍ତ, ସିନ୍ଦୂରଫଟା ଆକାଶର ଆହ୍ୱାନରେ
ଖୁନ୍ଦି ବୁହୁଧୁଏ ଘର ହୃଦର ଢେଉ,
ନଈର ଏ ମୁଣ୍ଡରୁ ଆର ମୁଣ୍ଡକୁ
ଗୋଟେ ଚୁପ୍‌ଚାପ୍ ପାହାନ୍ତିଆ ସ୍ୱପ୍ନରୁ
ଅନ୍ୟ ଗୋଟେ ସ୍ୱପ୍ନର ସନ୍ନ୍ୟାସକୁ
ହକାରି ନିଏ ଫେରିବାଲା । କୁଷ୍ଠ ରୋଗୀର
ଭଙ୍ଗା ଟିଣରେ ଭରିଦିଏ ରେଜା ଓ
ଫିଟେଟ୍ କାରର କାଚ ଝର୍କାରୁ ଓହଳି ପଡ଼େ
ତୋଫା ହସର ମୁହଁ, ଧୂଆଁର କୁଣ୍ଡଳୀରେ
ଚକ୍‌କର ଖାଏ ରକ୍ତ ଓ ମାଂସର ଅନ୍ଧାର !!
ଏକାନ୍ତ ଉଲ୍ଲୁକ ଆହ୍ଲାଦରେ
ଭଙ୍ଗି ପଡ଼ୁଥିବା କାନ୍ଥ, ଏକାନ୍ତ ଦୁର୍ବାର
ଲଢ଼େଇ କ୍ଷତରେ ନହଡ଼ି ଭଙ୍ଗୁଥିବା ହାତ,
କାଦୁଅ ପଙ୍କର ଚନ୍ଦନରେ ବୁଡ଼ିଯାଉଥିବା
ଗୋଦର ପାଦ; ଚମତ୍କୃତଃ କଣ-ନଖାର ଦୁଃଖ
କୋଦାଳ ଓ ଦାଆର ଦାନ୍ତରେ
କାଟି ପକାଏ, ହାଣି ପକାଏ, ଛେଦି ପକାଏ
ଢାଅନ୍ତା ରାକ୍ଷସର ଭୂଷଣ୍ଡି ନାକ !! ଫେରିବାଲା
କ'ଣ ବୁଝିପାରେ ଯେ, ଲୁହାର ଶାମୁକା
ଫୁଟାଇପାରେ ପଦୁଅଁର ମୁକ୍ତା, ବୟସ୍କ
ସ୍ୱପ୍ନର ଡାଳରେ ଅସୁମାରି ସୁନାର ଫୁଲ
ଅନାବନା ଘାସର ଅରମା ସନ୍ଧିରେ
ସୂର୍ଯ୍ୟର ଦୁର୍ଦ୍ଦାନ୍ତ ଦମ୍ଭ ପରି, ନିଆଁର ସର୍ବଗ୍ରାସୀ
ଜିଭ ପରି ମଥା ଟେକେ ସତ୍ୟ, ନିଷ୍ଠୁର
ମୃତ୍ୟୁର, ସହଜ ନିଦ୍ରାର ଶଯ୍ୟା ଆସି

ଆଉ ଆବଗ୍ର କରେ ନାହିଁ, ଭନ୍ଦୁଅ କରେ ନାହିଁ
ଅନ୍ତତଃ ଚଞ୍ଚଳ, ମୁଖର, ଚ୍ନ୍ଦପ୍ଦ୍ରମ୍‌ପ୍‌ ବୋଝ
ବୋହିବାରେ ଫେରିଯିବ ଫେରିବାଲା
ପୁନଶ୍ଚ ତା ନିଜସ୍ୱ ଦୁଃଖକୁ, ନିଦ୍ରାର ରେଶମ
କୋଳକୁ, ସ୍ୱପ୍ନର ଦୋଳିକୁ ଭୁଲ୍‌-ଭଟକାକୁ
ଭୁଲାଇ ରଖୁଥିବା ପାତଳ ଅନ୍ଧାରର ଗମ୍ଭୀରୀକୁ ।

ସନ୍ଦେହର ତାଜବ୍‌ ଦୃଷ୍ଟିକୁ ପଛେଇ
ତା' ଦରୁଡ଼ା ନିହ୍ରଣର ଶବ୍‌ଦରେ
ଘେନେଇ ଆସେ ସଞ୍ଜ ଓ ତା କ୍ଳାନ୍ତ
ଆଙ୍ଗୁଠିର ଗଣ୍ଠିରେ ଝୁଲି ରହେ
କାଗଜ ଠୁଙ୍ଗା ସେ କ'ଣ ଜାଣିପାରେ ଯେ,
କେତେ କୀଟାଣୁର ନାହୁଡ଼ରେ
କେତେ ଖେଦର ଅଭିମାନରେ
କେତେ ରହସ୍ୟର ଚମ୍ପା କଢ଼ିରେ
ପୂରିଚି ତା' ସ୍ୱସ୍ତିର ନିଶ୍ୱାସ, ତା' ଗର୍ବର
ଜୟଜୟକାରର ସ୍ତବଧ ଇତିହାସ । ସନ୍ଦେହର
ତାଜୁବ୍‌ ଦୃଷ୍ଟିରେ ଫିଟ୍‌ଫାଟ୍‌ ନୀରବ ଭାଗ୍ୟରେ
ହସୁଚି ଉହ୍ମର ବ୍ୟଙ୍ଗ, ତା' ସୌଦାଗରୀ ଧନ୍ଦାର
ଖୁଲ୍‌ବାଜି, ତା' ପୌରୁଷର ମେଣ୍ଢାପଲ
ଚଲଉଟି ଯାଉଛି ପୁନଶ୍ଚ ସମୁଦ୍ରକୁ । ସମୁଦ୍ରର
ଘୂମନ୍ତ ନହଡ଼ିକୁ ତା' ନିଷ୍ପାପ ନିଦ୍ରାର
କଅଁଳ ଚଉପାଢ଼ୀକୁ ତା' କାନ୍ଦୁରୀ ମମତାର
ଦଗ୍‌ଧ ବନକୁ ଯେ; ଫେରିବାଲା
ଡାକ ପାରୁଚି—ପିଙ୍ଗିଦେ, ତୋ ଆବୁରୁଜାବୁରୁ
ସଞ୍ଚିତ ଫୁଲଦାନିର ମୌନ ଅଙ୍ଗୀକାର ।

ଘଡି ନ ପାହୁଣ୍ଡୁ, କୁଆ ନ ଗବୁଣ୍ଡୁ
ଛୁଆଙ୍କ କାନ୍ଦଣାରେ ମା'ମାନଙ୍କ ନିଦ

ନ ଭଙ୍ଗୁଣ୍ଣ ଡାକଘରେ ଫେରିବାଲା
ଝାଡ଼ିଝୁଡ଼ି ଦେ କତା ଫରିକନାର ବଟୁଆରୁ
ରତାନୁରଡ଼ିକ ଭବେ ସୁରକ୍ଷିତ ଓଷଦ, ଜଡ଼ିବୁଟି,
ଚେରମୂଳ, ଭଲାଷ୍ଟିକ ଖେଳନର ଟୌକଧ।



ଝଙ୍କାର—୨୭ଶ ବର୍ଷ—୧୧ଶ ସଂଖ୍ୟା
ଫେବୃୟାରୀ ୧୯୭୬

# ଛଥାର ମଞ୍ଚ

॥ ୧ ॥

ବଜାରରେ ସୋର ଶବ୍ଦ କିଛି ନାହିଁ,
ନାହିଁ ମେଳାପି ମୁହୂର୍ତ୍ତର ଉତ୍ତାପ ଓ ଖୁସିର ମଲ୍ଲା ଛନ୍ଦ ।
ନାହିଁ ଝଣ୍‌ଝାଣ୍‌ ଶବ୍ଦର ଆଇଁଷିଆ ଗନ୍ଧ
ର ଉକଟ ଉତ୍ତେଜନା ବାବୁରି ଅନ୍ଧାରରେ,
ଥଣ୍ଡା ପବନର ଛିଣ୍ଡା ଉତ୍ତରୀରେ,
ସୋର ଶବ୍ଦ ନାହିଁ ବଜାରରେ, ହାଟରେ.....
ଗୁଆକାଟିର ଦାନ୍ତୁଆ ପାକୁଳିରେ ।
ମନ ଶବ୍ଦ, ସବୁ ଉତ୍ତାପ ଉଡ଼ା ପକେଟରେ
ସାମାନ୍ୟ ରଣ୍‌ଝଣ୍‌ ରେଜା ବଜାରର ନିର୍ଜନ-
ବସ୍ତିରେ, ନଈତଟର ଜମାଟ ବାଲିରେ, ନଗିଡ଼ି
ପଡ଼ୁଥିବା ଝାଳର ଉଷୁମ ଉଶ୍ୱାସରେ,
ଢକେଇ ଆସୁଥିବା ଆଖିର ଉଜଳ ଦୃଷ୍ଟିରେ !

॥ ୨ ॥

ନିଜକୁ ପରଖିବାର ସାହସ
କାହାର ଅଛି ଯେ : ନିଶୂନ୍‌ ବଜାରର ଇତସ୍ତତ
କାଗଜ ଠୁଙ୍ଗା ଓ ଖଲିରେ
ସଞ୍ଚରି ଯିବ କୁହୁର ଥିରତା, ଗହଳି ଭାଙ୍ଗୁଥିବା
ଦେଳର କୋଟଟ କୁଣ୍ଡାର ବାସ୍ନାରୁ
ଝରି ପଡ଼ିବ ହାଟବାହୁଡ଼ା ଗ୍ୱଲିର ହାଲ୍‌କା ଗୀତ

ଦୋକାନ ବନ୍ଦ କରୁଥିବା ଲୋକର ହାତଗଣ୍ଠିରୁ
ଥୋପା ଥୋପା ରକ୍ତ, ବନ୍ଧ ସତର୍କ ଶ୍ୱାସରେ ।
ପ୍ରଶ୍ନଟିଏ ପଚାରିବାର ସାହସ
କା'ଣ ଅଛି ମଣିଷର ଦମ୍ଭିଲା ଖୋଳରେ ।

।। ୩ ।।

ସୋର ଶବ୍ଦ ଟିକେ ନାଇଁ
ଝିଲିମିଲି ଜହ୍ନ ଆଲୁଅର ଛାତିରେ,
ଝଙ୍କା ବଉଳଗଛର ଖୁନ୍ଦି ହୋଇଥିବା
ପତ୍ରର ଶିରରେ, ଲହରେଇ ଲହରେଇ
ମାଟିର ପେଟକୁ ଚିରି ଅତର୍କରେ
ପଳାଇ ଯାଉଥିବା ଛୋଟ ଝରଣାର ସୁଅରେ,
କ୍ଷେତର ବଉଳି ଆସୁଥିବା
ଫୁଲକଢ଼ିର ଗୁମାନରେ, ଜୁଡ଼ା ସଜାଡୁଥିବା
ଯୁବତୀର ଅକାତକାତ ହୃଦର ଠିକଣାରେ ।

।। ୪ ।।

ଅଫିସ୍‌ରେ ଫାଇଲ୍‌ପତ୍ର ସବୁ
ଠିକ୍‌ଅଛି, ମାତ୍ର ଚଢ଼ା ମେଜାଜରେ
ସୋର ଶବ୍ଦକୁ ଚଲୁ କରିଦେଇଛି
ଛକାପକା ଡାର୍ଯକ୍ ଗାରର ନାଲି ସ୍ୟାହି
ବଡ଼ କୁହୁକରେ, ପଡ଼ିଲା ତାରିଖ
ବିଳମ୍ବ ନାଇଁ, ମାଟିଆ କାଗଜ ପୃଷ୍ଠା
ଦୂରିଯାଇଛି ମିଞ୍ଜି ମିଞ୍ଜି ଦୁଃଖର ଅକ୍ଷରେ ।
ସୋର ଶବ୍ଦ କିଛି ନାଇଁ
ବାସନକୁସନର ଝଣଝାଣ ନାଇଁ ଜମା
ଚଳ୍‌ଚଳ୍‌ ପବନରେ ଘର ଅଗଣାରେ ।

।। ୫ ।।

ସୋର ଶବ୍ଦ ଟିକେ ନାଇଁ
ମହୁଲ ଗଛରେ ପାହାଡ଼ର ନିଆଁ ଏବଂ

ରଙ୍ଗ୍ ବାଦ୍ୟ ରେଖାଙ୍କ ବସ୍ତିରେ,
ଡିକେନ୍ସଙ୍କ ଶବଟିଏ ବିନ୍ଧେ ନାଇଁ
ଝଡ଼ାପତ୍ର ଶ୍ମଶାନ, ଅରଣ୍ୟ ଛାଡ଼ିରେ
ଯୋର ଶବ୍ଦ ହଜିଯାଏ
ନାନାବାୟା ଗୀତ ପରି
ଶରତର ମଥାହଲା, ବେଣୀ ଖୋଲା
ଜଳ ଭଉଁରୀରେ ଏବଂ ମୋର ସବୁ
ଦୁଃଖ, ଚକାଡୋଳା ବ୍ରହ୍ମାଣ୍ଡ ଭିତରେ ।

॥ ୬ ॥

ଚୁପ୍ ଚାପ ଯୋର ଶବ୍ଦ
ଘାତକର ଭୁଲାଲିରେ, ମଧ୍ୟାହ୍ନ ଖରାରେ ।
ବୟସର ପାଚିଲା ବାଳରେ
ସଞ୍ଜବେଳ ଧୀର ପବନର, କଇଁର ନାଦରେ
ଝରି ପଡ଼ୁଥିବା ଫୁଲର ଦୁଃଖିତ ଢେଉରେ,
ଶିରି ଶିରି କାକରର ନରମ ଗୀତରେ,
ଧୂଆଁ ଭର୍ତ୍ତି କଳା ଚିମିନିରେ, ଜୀବନବୀମାର
ପଚିଶିଟି ହଳଦିଆ, ଶେଡ଼ା ବସନ୍ତରେ
ସ୍ୱର ଶବ୍ଦ ମୁହୂର୍ତ୍ତର ହାଡ଼ ଏବଂ
ଅର୍ଥମୟ ସ୍ମୃତିର ଶେଯରେ ।



ଅଷ୍ଟବିଂଶ ବର୍ଷ : ୨ୟ ସଂଖ୍ୟା
୧୯୭୬ ମେ' ସଂଖ୍ୟା 'ଝଂକାର'

# ଭିନ୍ନସ୍ୱାଦର ଗୋଟିଏ କବିତା

ଜୀଇବା ଠାରୁ ମରଣ ଭଲ
ମରଣ ଠାରୁ ଜୀଇବା ଭଲ
ଭଲ ବା ଭେଲ
କହିବ କିଏ ? ଏଭଳି ଏକ
ନିରୁତ୍ତର ପ୍ରଶ୍ନ ଯଦି ପଥର ନଢ
ଭିତର ଘର ଠାକୁର ସିଁନା
ଉତ୍ତରିବ ! ଆଉ ବା କିଏ
ବୁଝିବ ସବୁ ଅଡୁଆ କଥା
କଥାର ନଥା, ନଥାର ବିଡ଼ା
ଅଫିଟା ରହେ କାଳକୁ କାଳ
ବହଲ ମନ, କୋହଲ ପାଗ
ବୁଝଇ କେବେ ?
ଫାଙ୍କା ନୀଳ ଆକାଶୀ ବ୍ୟଥା ।
ଯାହାର ଜିଭ ତିଆରି ହାଡ଼େ
ଜଞ୍ଜାଳର ପଣତ ଦାଢ଼େ
ମୁରୁକି ହସେ କୁଆଁତର
ହଜାଇବାର, ସାଉଁଟିବାର, ଗୋଟାଇବାର
ଦ୍ରାକ୍ଷାଫଳ ! ତଟସ୍ଥ ମୋ
ଭିତର ଘର ଠାକୁର ମୂର୍ତ୍ତି
ଝାଳେଇ ଯାଏ, କୁହୁଳିବାର ତ୍ରିକ୍ଷଣ୍ଣ ହାଳ
ଗୋଟିଏ ହେଲେ ଶବ୍ଦ କାହୁଁ

ମୁକ୍ତାପରି ଉଜ୍ଜଳେ ନାହିଁ,
ଋତୁର କଳା ଓଠର ଫାଳେ
ଜଳଇ ନୂଆ ହସ୍ତାକ୍ଷରେ,
ଜୀଇବା ଠାରୁ ମରଣ ଭଲ
ମରଣ ଠାରୁ ଜୀଇବା ଭଲ
ଭଲ ବା ଭେଲ
କହିବ କିଏ ?

ସିଲେଇ କଳ ଘୁରୁଣା ପାଟ
ଧଡ଼ିରୁ ଯାଢ଼ି ଓହ୍ଳି ପଡ଼େ
କିଛିଟା ମଲ୍ଲି ମଲ୍ଲୀ ଫୁଲ,
ବାସ୍ନା ତାର ଚହଟି ଯାଏ ।
ସମୟର ଶିଉଳି ଘାଟେ
ହଳଦୀମଖା ସପନ ଦେଖା
ସରେ କିନା, ଅସଘ ପେଡ଼ି
ଅଫିଟା ଡୋର ଛନ୍ଦି ହେଇ
ଓଟାରେ କଳା ମେଘର ଗୋଡ଼,
କହରେ କହ୍ନ, ଜୀବନଠାରୁ
ମରଣ କ'ଣ ଏମିତି ଭଲ ?
କଅଁଳ ଖର, ନରମ ଘାସ,
ନେଳୀ ଆକାଶ, ଲହଡ଼ା ଘାଟ
କିଚିରି ମିଚିରି ଚଢ଼େଇ ଗୀତ
ସତରେ ମିଛ ? ସତେଜ କଳା କିଶୋରୀ
ଆଖି, ଦିଏରେ ଯୋଖି
ଭଙ୍ଗା ହାତ, ତୋହର ଚମ
ମୋହର ତମ ଝଙ୍କୃତ ଛବି
ଫୁଟାଏ ଫୁଲ ।

ଉଚ୍ଛୁଳି ପଡ଼େ ମସ୍ତକ ତାର
ଭଜ ତି ଯାଏ ଜଉର ଘର-
ଧ୍ୱରଟିଏ ବାନ୍ଧି ଢ଼ଙ୍କେତେ
ସହିତେ ହୁଏ ଅପୋଡା, ପୋଡା
ଅଜଳା ଜଳା, ଫେଣ୍ଟା ଫେଣ୍ଟି
ମିଠା ମିଠି ରାତର ସ୍ୱପ୍ନ ॥



୧୯୬୪ 'ସପ୍ତର୍ଷି'
ପୂଜା ସଂଖ୍ୟାରେ ପ୍ରକାଶିତ

# କଳା କାହ୍ନୁ

'କଳାକାହ୍ନୁ' ଅଧୁନାତନ ଜୀବନର ନିର୍ଭୁଲ ଖସଡ଼ା । ପ୍ରେମ ଓ ଆଧ୍ୟାତ୍ମିକତାର ସଂଯୋଗ ରେଖା 'କଳା'—'କାହ୍ନୁ' ଏଇ କଳାର କାରିଗର—ଜୀବନର ଚଳଂତିକାର ଗୋଳାବାରୁଦର କୋଠରୀରୁ ମୁକ୍ତି ଖୋଜେ କଳା, କଳାକାର ବି । ସବୁ ବିଡ଼ମ୍ବନା ମଝିରେ ବି କାହ୍ନୁ ବଂଶୀ ଫୁଂକେ, ଏ ଫୁଂକ ତାର ରକ୍ତଗତ, ଏହାର ସଂକେତ ଓ ବ୍ୟଂଜନା କବିତାଟିର ଲକ୍ଷ୍ୟ ।

ରେ କଳାକାହ୍ନୁ ! ଢଳ୍ଢଳିର ଉଦାସ ଉଦାସ
କଅଁଳ ଆଖି କେମିତି ମୁଦି ହେଇ ଆସୁଚି ଥଂଡ଼ା ପବନରେ,
ପବନର ଭିଜା ରୁମାଲରେ, ବାସ୍ନାଭିଜା ଫୁଲର
ଯୋଡ଼ିଗମଖା ଓଳଗିରେ । ରେ ମନୁଆଁ, ମନମତାଣିଆ;
ଟାଆଁସାଚୁଳିଆ, ଖିଆଲୀ, କାଢ଼ୁଆ :

x x x x

ତୋ କାଢ଼ପଣ, ତୋ ଦାଢ଼ପଣ, ତୋ ସଢ଼ି ଆସୁଥିବା
ନାସ୍ପାତିର ସୁନ୍ଦର ବନ, ରେ ନାଗର ! ରେ
ନା ରେ ନା ରେ ତାରେ ତାରେ ଗୀତର୍ ସାଗର୍,
ତୋ ସୁକୁଟା ଚମ୍ଡ଼ାରୁ ଝଡ଼ି ପଡୁଚି ନାଲି ବକଳ—
ତୋ ଶିରା ଓ ଧମନୀରୁ ନିଗିଡ଼ି ପଡୁଚି କାଳ—ବାରେଣି
ନାଗୁଣୀର ଥୋପା ଥୋପା ଡାଡ଼ିର ନହୁ,

ସବୁ ଅଜଣାର ମାଝଣାରେ, ଗୋଲି—ଖେଳ
ଚାଲିଚି ତ ଚାଲିଚି; ପଞ୍ଚନର ଅଦେଖା ଘରରେ ।
ଚାଲିଚି ତ ଚାଲିଚି ଛକପକା ଶୂନକଟା, ଗାରଟଣା
ପବନର ଜମାଟ ବାଲିରେ !

କି କୈଫିୟତ୍, କି ଜବାବ ସୁଆଳର ସୁଅ
ତୋତେ ବୁଝାଇ ପାରିବରେ ଛିଟ କାନର କୁର୍ତା ପିନ୍ଧା
ବେଢ଼ଂଗ—କୁହାଳିଆ, ମୁରଲିଆ; ତୁ କି
ମୂଲ ଦେଇ ଜାଣୁ ? ଦେଖ୍ ବିକାଳିର ହାଟ ଚାଲି
ରୁ ଗହଳି ଭାଂଗିଲାଣି ବେଳ ରତ ରତ, ସଂଜ
ଖସ ଖସ, ଆକାଶର ଟେଲୁଅ ମଥାନରେ—
ଅନ୍ତରୁଷ୍ମା ଦିଆ ବୋହୂର ଜୁହାର
ଜଳି ଆସୁଥିବା ସଳିତାର ଶିଖାର ଜିଭରେ !
ରେ ଟାଣପଣର ପଥୁରିଆ ପ୍ରବନର ଧରବାନ୍ଧ,
ତୁ କି ଜାଣୁ, କେମିତି ମାଟି ଧସିଯାଏ
କୂଳଖିଆ ଯମୁନାର ଜଳରେ—
ତୋ ପାଦ, ତୋ ମଥାର ଖେଗ ନାଡ଼ିକୁ
ଝୁଂପୁଥିବା ଘ ଷ କୁଆର ବିକଟ ଶବଦରେ ।

ତୋ ମାଂତ ସିଡି ରଡି ଉଚ୍ଚାଗର ଜାଗର
ଅଂଧାରରେ, ସାତସିଆ କଂଥାର ମୁଣିରୁ
ଗୋଟି ଗୋଟି କଉଡ଼ି ଗିଣୁଚି ନାରଂଗ ଫଳର
ବିର କିଟିଆ ଗଂଧର ବିଷରେ । ତୋ ରାଧା ତ
କେଶ ପଖାଳୁଚି କପୁର୍ର ପାଣିର ନହୁଡ଼ିଭଂଗା
ଘାଟର ପଥରରେ । ତୋ ଗୋପାଂଗନା
କା'ଣ ମୁରଲୀ ଧ୍ୱନିକୁ ଖୋଜୁଚି
କଦଂବ କେଶରେ, ଉଲଂଗିର୍ଗ—ନିଦବାଉଳାରେ
ରେ କଳାକନ୍ହ, କି କିମିଆଁ; କି ଭେଲ୍ଜବାଜି
ଯଂତ୍ରରେ ଯଂତି ହଉଚୁ ଜାଣେନା,
ବୁଝେନା—ତୋ ଖୁଦଭିଙ୍କା ବଂଧା ଗଂଠିଲିର ବଂଧୁକୁ
ଅଣାଯଉ ନହଡ଼ିବ ପର୍ବତ

କୁଁ ଋନି ଧରିଥିବା ପାଦର ଔଦ୍ଧତ୍ୟ,
ରେ ଶିଆଳି ଲଟାର ଛଟପଟ କାଁଦୁଆ ମଣିଷ,
ରେ ଘର୍ ଘର୍ କରି ଘୂରଇ ଦଉଥିବା ଚକ୍ରର
ଚଢ଼ଚକ୍ରୀ—ତୁ କ'ଣ ଜାଣି ନାହୁଁ ଯେ :
କେଁଚୁଆର ଘୁଷୁରି ଘୁଷୁରି ଗ୍ଲଲିବାର ଟେମଜାଙ୍କରେ
କି ବଡ଼ିମା, କି ବଡ଼ପଣିଆର ବଡ଼ ଦେଉଳର ଢିଅଁ
କେବଳ ଆଖି ମିଳାଉଚି
ତୋ କଠଉର ନିଃଶବଦ ଶବ୍ଦରେ,
ମଉଳି ଆସୁଥିବା ଚଂପା କଢ଼ିର ଦିଗହଜା ବାସ୍ନାରେ,
ପାହାଂତିଆ ତରର ମିଟି ମିଟି ଚାହାଣି, ଓ
ଫର୍ଚା ଦିଶୁଥିବା ବିଗ୍ବଳୟ, ସିଂଦୂର—କାଂଥିରେ ।।

ରେ କାହ୍ନୁ, ତୋ ମୟୂରପଂଖୀ ସ୍ୱପ୍ନର
ଢଉଘର, କାଚ ଝିଆଲ, କାଗଜ ଖୋଳର
ଆକାଶୀ ସ୍ତଂଭ କେମିତି ଜଳୁଚି, କେମିତି
ଝଳୁଚି, କେମିତି କୁହୁଳୁଚି ଦେଖ୍ ; ଦେଖ୍
ଶିର୍ ଶିର୍ ହେଇ ପବନର ବ୍ଲେଡ୍ ଦାଢ଼କୁ
ପଡେଇ ଦଉଚି ତୋ ପାଦର ଅଳତା ବେଢ଼,
ମୋ ଅଂତବୁଡ଼ୁଳାର ରକ୍ତ, ହାଉଯାଉ
ପୋକମାଛିର ଶୁଂଢ଼ ଉଖାରି ଦଉଚି
କଲବଲିଆ, ନଟପଟିଆ, ନିଲଠା ଶୁଖିଲାହସର ମୁହଁ,
ମଳମୂତ୍ରର ପଚ୍ଛଗଂଧ ! ତୁ କ'ଣ ଦେଖୁ ନାହୁଁ ଯେ,
ଏବେ ବନସ୍ତରେ ଶିମୁଳି ଫୁଲର ପଷ୍ଟ, ଅରଣ୍ଡି ଫୁଲର କଷ୍ଟ
ଗଉଡ଼ କାକୁଡ଼ି ଲଟାରେ ସବୁ ନହୁ, ସବୁ ମହୁ
ସବୁ ଅବୁଝା ବୁଝା ଖୁସିବାସିର ଧୋବଧୋବଳିଆ
ଜହ୍ନର ନିସ୍ତୁକ ପହଁର ! ତୁ କ'ଣ
ପହଁର ଜାଣି ନାହୁଁ ଯେ : ଏଡ଼େ ଡର
ବୁଢ଼ା ମାଷ୍ଟ୍ରଂକ ନହକା ବେତକୁ ! କାଂଦୁରୀ
ମା'ର ନୁହବୋଳା ଆଖିର ଉଷୁମ ବୋକକୁ !
ତୋ କଦଂବ ଗଛର ଡାଳ କ'ଣ ଶୁଖି ଯାଇଚି ଯେ;

ଯମୁନାର ଅତଡା ଖସି ପଡ଼ିବ ଗୋପୀଙ୍କ ମାଠିଆ ଶବ୍ଦରେ
ପର୍ କିନା ଲୁଚିଯାଉଥିବା ସାପର ଝୁଂଗୁର ବେକରେ !

ରେ କହ୍ନାଇ, ତୋ କିମିଆ, ତୋ ତା ଧିନ୍ ଧିନା
ତୋ ଦୋ ଦୋ ଚିହ୍ନା ହୁସର ଫୁଲ ଝନି
ଏମିତି ଝରୁଥାଉ କି ଦିନ, କି ରାତି, କିସ ବା ସମୟ !
ସମୟର ଅନ୍ୟ ନାମ କଳାକାହ୍ନୁ, କହ୍ନାଇର
ଜହ୍ନରାତି, ଯମୁନା ତ ଛଳ ଛଳ ବସଂତର ଲୟ !!



୧୯୭୬, ପୂଜା ସଂଖ୍ୟା 'ସମାବେଶ'

# ଅପେକ୍ଷା କେବଳ

ନା ନତଣା କେଉଁ ଉଦାସୀ ସଞ୍ଜ
ସାମାନ୍ୟ ସଳିତାର ଶିଖାରେ
ମଥା ଟୁଙ୍ଗାରି, ଏକାଟିଆ ତରର ହସରେ
ସାମାନ୍ୟ ଚହଲି ଛପିଯାଏ
ମୋ ସଞ୍ଚିତ ପୁଣ୍ୟର କୋଠରୀରେ,
'ଦୀପଂ ଜ୍ୟୋତି-ପରମବ୍ରହ୍ମ'ର ଅନୁଛ
ଶୋକରେ, ପବନର ଅସ୍ଥା ନୀରବତାର
ହାଇରେ ଝାଳେଇ ଯାଏ ତା'ର ଚିହ୍ନ,
ଓ ସମ୍ଭାବନାର ଦୁଆର ବନ୍ଧରେ
ଝୁଲିପଡ଼େ କଳାପର୍ଦ୍ଦା, ଉଆଁସ ଅନ୍ଧାର ।।

ଯେଉଁ ଅନ୍ଧାରିଆ ଗୁମ୍ଫ ଅରଣ୍ୟର
ଦୀର୍ଘ ଅପେକ୍ଷାରେ ମୋର ଶ୍ଳୋକ ।
ମୋ ଶ୍ଳୋକର ଖଞ୍ଜଣିର ନିଷ୍ଠୁରତା,
ମୋ ପରମ ଦୁଃଖର ପୁଷ୍ପିତ ଶବାଧାର,
ତାର ବିଳମ୍ବ ନାହିଁ ଆସିବା, ତାର ଉତ୍ତର
ନାହିଁ ଢେଉ ଢେଉକା ସମୁଦ୍ରର ନାଦରେ
ଅଦୃଶ୍ୟ ପାଦଶବ୍ଦ, ଦୃଶ୍ୟ ସ୍ୱପ୍ନର ମୁକାବିଲା;
ସେ ଆସିବନି ଆସିବ, ସଂଗୁପ୍ତ ଅନ୍ଧାରି
ଠଣାକୁ, ମୋ ନିକଟତମ, ପ୍ରିୟତମ 'ହ୍ଁ'ର
ଜଳ ଭଉଁରୀକୁ ମାନ୍ଥର ଔଜ୍ଜ୍ୱଲ୍ୟରେ
ଉଛୁଳି; ଶୀତଳ ଉଷ୍ଣତାର ଆକୃତିରେ
ବତୁରି : ସେ ଆସିବନି ଆସିବ ।

କେଉଁ ତିମିରି ଫୁଲର ରଙ୍ଗଯନ୍ତ୍ରେ,
ଲୋଭ ମଳୟର ଅନ୍ଧ ଗୁହାଁଣିରେ
ନାଲ ଛାଡ଼ିଥିବା ବାଳିଆ କପୋତର
ଦଳିଲା ଦଳିଲା ପାଦଚିହ୍ନର ରକ୍ତର,
ସବୁ ନିଷ୍ଠା ଓ ଧୈର୍ଯ୍ୟର ଯୋଏଡ଼ଜକସ
ସୁନା ଗହଣାରେ, ବା ସାଇକେଲ
ଚକତଳେ ଚାପି ହୋଇଥିବା ଗୁଣ୍ଡୁଚିର
କାନ୍ଦରେ,-ପଥୁରିଆ ଧୈର୍ଯ୍ୟର
ଏକାଗ୍ର ମୁଦ୍ରାରେ !!
ନାଁ । ନେତଣା କେଉଁ ଉଦାସୀ ସଞ୍ଜ
ଚହଟାଇ ଦିଏ ଅନ୍ଧାରର ପଥର ଘର,
ପଥର ଘରର ଜମାଟବନ୍ଧା ଦୁଃଖର ହନୁହାତ,
ବିଶ୍ଳେଷ କରିଦିଏ ବିନିଦ୍ର ଆଖିର
ଠୁଳ ହୋଇଥିବା ବହୁ କାଳର ଅନ୍ଧଶୀର ଶ୍ରାବଣ ।

ଦୀପଟିଏ ଜଳିଲେ ସଞ୍ଜ
ହସିଦିଏ । ଜଗଟିଏ ଟେଇଁଲେ ସଞ୍ଜ
ଲୁଚିଯାଏ, ବିଲୁଆଟିଏ ଭୁକିଲେ
ସଞ୍ଜ ହଜିଯାଏ କେଉଁ କାଳାନ୍ତରର
ଅଠାଳିଆ ଭିଡ଼ରେ, କେଉଁ ଦରଭୁଲା ସ୍ନେହମିଶା
ଦୁଃଖର ଧନୁଶରରେ ଛଟପଟ ହୁଏ ଖରା; ଓ
ସେ ଆସେ ଏମିତି ଖଞ୍ଜରେ, କୁହୁକରେ
ଅଦ୍ଭୁତ ଅବଶର ଥଟିଲା କଦଳୀପତ୍ରରେ
ଯେ : ନିଃସଙ୍ଗ ଅନ୍ଧାରର କୋଠରୀର
ପଥର କାନ୍ଥ ପାଲଟିଯାଏ କାଚ ଦିଆଲ;
ଭଲ୍ଲୁକ ଆଲୁଅରେ ଝଲସି ଯାଏ,
ଚମକି ଯାଏ ପଥର, ହୃଦୟର ଦିଅଁ,
କଳା ମଚ ମଚ ଅନ୍ଧାରର ନିଷ୍କପଟ ସାମାଜ୍ୟ !

ସେ ଆସିବଇଁ ଆସିବ । ସେ ଆସିବ
କେଉଁ ବେଳାରେ, କେଉଁ ମୁହୂର୍ତ୍ତରେ, କେଉଁ
ଝଟକର ପାଲିଙ୍କିରେ, ଗଙ୍ଗଶିଉଳିର ଚଉତୁଳରେ
ଯେ : ବାଜିବ ଝଙ୍କ-ମହୁରିର ନହବତ ।
କେବଳ ଯାହା ଧୈର୍ଯ୍ୟ ରତାଇ ଦିଏ
ମୋ ମନସ୍କ ଶୋକର ମୁଦ୍ରା, ଧ୍ୟାନସ୍ଥ
ଶିଖାର ତପସ୍ୟା ।।



ପୂଜା ସଂଖ୍ୟା "ଝଙ୍କାର"
୧୯୭୬ ରେ ପ୍ରକାଶିତ ।।

# ଅଜ୍ଞାତ ବାସ

ଦୁର୍ଦାଂତ ଈର୍ଷାରେ ବାଟ ହଜେ ସମୟ
ଓ ସମୟର ଈର୍ଷା ଖୋଜେ ନୂଆ ବାଟ, ନୂଆ
ଫଂଦି ସମୟର ଗୋଡ଼ ଛାଂଦିବାରେ,
ଏପରିକି ସ୍ୱପ୍ନମାନଙ୍କର ଗୁପ୍ତ ଷଡ଼ଯଂତ୍ର
ଆଶା ଏବଂ ବିଶ୍ୱାସର ଛଦ୍ମବୃଟ୍ଟ, ଚିକ୍କଣ ଶବ୍ଦରେ
ସମୟଈ ଲୁଚିଯାଏ, ହଜିଯାଏ, ସ୍ଥିର ହୁଏ
କାନକୋଳି କଣ୍ଟା ଘେର ନୀଳ ଜଙ୍ଗଲରେ,
ଥପ୍ ଥପ୍ ଥପ୍ ଥପ୍ ରକ୍ତ କ୍ଷରେ
ତାର ଅଂଠ, ଜଙ୍ଘ ଏବଂ ତା କଠିନ ଲୋମଶ ପାଦରେ

ସମୟ କି ମେଂଢାଭଳି କାକୁସ୍ଥ ଦୃଷ୍ଟିରେ
ଖୋଜଇ ସମୟ । ସମୟ କି ନିଛାଟିଆ
ଡର ଭଳି ଚିହ୍ନଇ ସମୟ । ସମୟ କଳାହାଂଡିଆ
ମେଘପରି ଗୁମ୍ ସୁମ୍; ହଜିଯାଏ, ମଜ୍ଜିଯାଏ
ଅପଣାର ଖପ୍‌ଖାପ୍ ଢିଆଁର
ଭଙ୍ଗୀରେ । ଆପଣାର ଖୋଜ ଚିହ୍ନ
ପାଣିର ଧାରରେ !

କେ କାହାକୁ ଠେଲିଦିଏ ମୌନତାର
ବଂଦ କୋଠରୀକୁ ? କେ କାହାକୁ ଧକ୍କା ମାରି
ଜବରଦସ୍ତି କାବୁକିରେ ମଝି ସମୁଦ୍ରରେ ?
ବା କେ ଭାଂଗି ରୁଜି ଛିନ୍ନଛତ୍ର କରେ
କଏଦୀର ଝର୍କା, ଦ୍ୱାର, ନିର୍ଜନ ଆକାଶ

ଓଯ : ଏ ସଂଶୟ ଟେକି ଧରେ ପୂର୍ବ ପରି
ସତ୍ୟର ମୁର୍ଦାର, ଜଙ୍ଗଲର ଗୁପ୍ତ ସୁଡଙ୍ଗରେ,
ଅଦୂରରେ ଢିକି ଢିକି ଜଳୁଥିବା
ଖାଳବଣ, ଅକୃପଣ ଆଶୀର୍ବାଦ
ଘୁମଂତ ମେଘରେ : ସେଠାରୁ ଫେରିଲେ
ବିଦ୍ଧ ହୁଏ ଦୃଷ୍ଟି, କାହାର ତପସ୍ୟା ଭଂଗେ

କ୍ରୋଧର ସତ୍ୟରେ ଓ କ୍ରୋଧସବୁ ଟଫି ଭଳି
ଗିଳିଦିଏ ସମୟକୁ ସମୟର ସହଜ ବେଗକୁ
ଅସହନଶୀଳ ଖବ, ସହନତା କଠୋର ପିଠିରେ
ଲାଂଛିଦିଏ କୋରଡା ଓ ସତ୍ୟଟିଇଁ
ଛପିଯାଏ ଅସତ୍ୟର ଧୂଆଁଳିଆ
ହାଉଯାଉ, ଠେସାଠେସି ଗହଳ ବଜାରେ,
ମତାଣିଆ ରସଦ ଆସରେ

ଈର୍ଷାର ଶ୍ୱେଟରେ ଛୋଟା ସମୟ !
ରକ୍ତର ହସରେ ଈର୍ଷା ଜୁଡୁବୁଡୁ;
କାଲୁବାଲୁ, ଖଣ୍ଡିଆ ଖାବୁର;
କେମିତି କହିବ କଥା—ଆଗ ଈର୍ଷା,
ନା ଆଗ ସମୟର ମୂଢ଼ କରୁଣତା !
ସମୟଇଁ ହଜିଯାଏ ସମୟର ଢେଉ କାଟି
ସୁଅର ମୁହଁରେ—ସବୁ ପୁଣି ଏକାକାର
ଭିନ୍ନ ଓ ଅଭିନ୍ନ ; ମାତ୍ର ପଦୁଟିଏ କଥା
କଲିଜାକୁ ଝୁଣେ ଓ ବିଦାରେ, ବିଦାରେ ଓ
ଝୁଣେ । ଯେତେବେଳେ ଚୁପ୍‌ଚାପ୍
ଅନ୍ଧାରର ଶେଯ ପୋଡେ, ଜଳେ ଏବଂ
କୁହୁଳଇ ଗୋଲ୍ଲହାଟ ଖେଳାର କଷଣେ !



ପୂଜା ସଂଖ୍ୟା "ବାଇଶି ପାହାଚ" ୧୯୭୬ରେ ପ୍ରକାଶିତ

# ଦୁଇଟି କବିତା

## ଏକ : ମୃତ୍ୟୁ

ଗୋଟାଏ କାଣୀ ବିଲେଇର
ଆଖି, ନିବୁଜ ଅନ୍ଧାରର
ଉଜାଲ୍ କୋଠରୀରେ
ପିଇ..ଯାଉଛି ଖେଦର କ୍ଷୀର,
ପିଇ ଯାଉଛି ସବୁ
ଦୀର୍ଘଶ୍ୱାସ ଛୋଟ ଛୋଟ
ଟୁକୁର ବାସ୍ନାର ରକ୍ତ ଝୋଳ,
ଗୋଟେ କାଣୀ ବିଲେଇ;
କିମିତ ତା ଫୁଲିଲ୍ ନିଶର
ଅପୁଷିରେ ହୁରୁଡ଼ାଇ ଦିଏ
ପଲ ପଲ ମୂଷାର ଚପଳ ସ୍ୱପ୍ନକୁ ?
କିମିତି ତା' ମୁନିଆ ନଖରେ
କୋରଣୀରେ ବିଦାରି ଦିଏ
କୃଷ୍ଣଚୂଡ଼ାର ଓଠକୁ । ଆହା
ବିଲେଇଟିଏ କାଣୀ ବିଲେଇ ।।

## ଧୂଆଁ : ଜୀବନ

ଅତି ସାମାନ୍ୟତମ ବିନ୍ଦୁଟିଏ :
ନୁହ ଓ ନହୁର ପେନ୍‌ସିଲ
ବାରମ୍ବାର ମୃଷ୍ଟି କା ଟାଣି ଟାଣି
କରେ ଗୋଟେ ବୃହତ୍ ବୃତ୍ତ ।
ଅସଂଖ୍ୟ ପ୍ରଜାପତିର ଡେଣା,
ଅସଂଖ୍ୟ ଫୁଲ ଫଳର ଡାଳ,
ଅସଂଖ୍ୟ ପତଙ୍ଗର ମେଳାରେ
ଶୁଭେ ନା ମହୁମାଛିର ଗୀତ । କି
ଗୀତର ଛନ୍ଦ, କି ଚନ୍ଦ୍ରର କାନ୍ଦ, ବା
କି କାନ୍ଦର ରତି ଖୁନ୍ଦିଦିଏ
ବୃତ୍ତର ଗର୍ଭ । ଜାଣି ପାରେ ନା
କେନ୍ଦ୍ରଚ୍ୟୁତ ଘୂର୍ଣ୍ଣି, ବା ସତ୍ୟର
ରୈଖିକ ଅଭିମାନ ।



୧୯୭୬-ରବିବାର, ତା ୧୦।୧୦।୭୬ 'ଧରିତ୍ରୀ'ରେ ପ୍ରକାଶିତ ।

# ଦୁର୍ବାର

( ୧ )

ଅଗପରି ଖରଦିନର ପାଚେରୀ
ଭାଂଗି ପଡ଼ୁନାହିଁ ସାମାନ୍ୟ ବର୍ଷାର ଧକ୍କାରେ
ଓ ଦୁବ ଘାସର ମଥାରେ
ଜହ୍ନଟୁ ନାହିଁ
ବୁଂଦା ବୁଂଦା କାକର, ବା ପତ୍ରମାନଂକ ଦେହରେ
କେଉ ଚୋବାଳି ଦଉ ନାହିଁ
କଂଗ୍ର ହଳଦୀ, ରଂଗ, ସୂର୍ଯ୍ୟ ଏ ଯାବତ୍
କୁହୁଡ଼ିଆ ଆକାଶର ପାଦକୁ
ଅଂକୁଶୀ ଭଳି ଭିଡ଼ି ଧରିଚି ଯେ :
ଆଉ କିଛି ଦେଖା ଯାଉନି
ହସର ମୁହଁ ସବୁ, କିମିତି ଝାଳଉଚି,
କିମିତି ବିବର୍ଣ୍ଣ ଦିଶୁଚି
ଧୂଳିଆ ସ୍ୱପ୍ନର ଜାଲରେ !

( ୨ )

ଅଗପରି ଖରଦିନର ପାଚେରୀ
ଭାଂଗି ପଡ଼ୁନାହିଁ ଝିଲ୍ ମିଲ୍
ତୋର ଅସ୍ପଷ୍ଟ ଶୀତ୍କାରରେ, ବା
ସ୍ମୃତିର ସ୍ପଷ୍ଟ ବାରି ହଉଥିବା

ଦୁର୍ଦ୍ଦାଂତ ଚେହେରାର ଲୋଭନୀୟ ଦାଂଭିକତାରେ :
କିଛି ବାରି ହଉ ନ ଥିବା ଘଟଣାର ସୁଅ
କିଛି ବାରି ହଉ ନ ଥିବା ସ୍ମୃତିର ମୁହଁ,
କିଛି ଚିହ୍ନି ହଉ ନ ଥିବା ପାଦଚିହ୍ନର ଦୁଃଖ,
ବା କିଛି ହଜି ଯାଉଥିବା ଚକ୍ ଚକ୍ ତରୁଣୀଆଲର
ଦାଉଆ ସ୍ନେହ : ସବୁ ଖରା ଦିନର ପାଚେରୀକୁ
ମଜବୁତ୍ ଓ ଦଂଭିଲ୍ କରିବା ଖାଂଜରେ
ମୋତେ ଟେକି ଦଉଚି ଉଜାଟ ଗୋଧୂଳି,
ମୋତେ ସଅଁପି ଦଉଚି ମଂତ୍ରପୂତ
ପବିତ୍ରତାର ଶବ୍ଦ ବ୍ରହ୍ମ : ଯାହାର
ଚେହେରା ଦେଖିଲେ ଡରଲି ଥାଏ ଇତିହାସର
ରାକ୍ତି, ଭୂଗୋଳର ବିଚିତ୍ର ମାନଚିତ୍ର,
ଜୀବନର ଉଦ୍ୟତ, ଉଜ୍ଜ୍ୱଳ ଶୋକର
ପଦ୍ମବନ, ମୁଦା ଆଖିର
ଲୁଣିଆ ସମୁଦ୍ର ଏ ନୀରବତାର
ଗୁପ୍ତ ବିସ୍ଫୋରଣ ! !



"ମଧୁଲିକା"—
ଅଗଷ୍ଟ, ସେପ୍‌ଟେମ୍ବର ୧୯୭୬ ସଂଖ୍ୟାରେ ପ୍ରକାଶିତ ॥

# ସମୁଦ୍ର—୧୯୭୫

୧୯୭୫ ସାଲ ଡିସେଂବରର ଶେଷ ସଂଜ ।
ହୁଲୁହୁଲିଆ ପବନର ନାଆ
ଦିଗ୍‌ଭ୍ରଷ୍ଟ—ଯେମିତି ମୋଓ ମନ,
କିଚ୍ଛି ଗୁମର ମିଳେନି ଗୁମାନର
ହକଳା ହକଲି ଢନ୍ଦ୍ର ଆଲୁଅର ଥଂଢ଼ା
ଚଂଦନ ଉଷୁମାଇ ଦିଏ ଢେଉଢେଉକା
ଆଖିର ତରଂଗ, ନିଛାଟିଆ ତଥର
କାନକୁହା ନା ଶୁଣେ ପବନ
ନା ଦୋ ଦୋ ଚିହ୍ନା ମୁହଁର କଂପନ !

ଗୋଟେ ମୌନତାର ଜେଲ ଘରରୁ
ଯେମିତି ମୁକୁଳି ଆସିଚି ହାଓ୍ୱା,
ଗୋଟେ ଦିଅଁ ପୂଜା ଖଟୁଲିର ଅଳିଆରୁ
ଯେମିତି ଝପଟି ଆସିଚି ମଂନ୍ତ୍ରପାଠ,
ଝାପ୍‌ସା ଦିଶୁଥିବା ଦୂର ଚକ୍ରବାଳର
ଓଠରୁ ଯେମିତି ନିଗିଡ଼ି ଆସିଚି ହସ !
ସମୁଦ୍ର, ତୋର କି ଦୁଃଖ ଯେ :
ତୋ ଗୀତକ୍ନ ନାମ୍ନ ତପର୍ସ୍ୟା, ଓ
ତୋର ବା କି ସୁଖ ଯେ :
ତୋ ହସର ନାମ ଋତୁ । ତୁ କାଂଦିଲେ
ଢଣାଯାଏ ଯେମିତି ମଣିଷ ଜାତିର

ସବୁ ସୁଖର ଇତିହ ତରଳି ଯାଉଛି ବଜ୍ରଭିନ୍ନର
ଛାଇ ଛାଇକା ବାଳି ଜହ୍ନର କୁହୁକରେ !

ତୋ ମୋ ଭିତରେ ବା କି ତଫାତ୍
ରେ ସମୁଦ୍ର, କେବଳ ଯା ମୁଁ
ନାଚୁଛି ତୋ ଶତାବ୍ଦୀର ଅସମାନ ଚଟାଣରେ;
ଜାଣେ ନା ତୋ ବର୍ଷାର ଗୋଲକ
ଉଟାରି ନେଇଯିବ ମୋ ଉଚଯାର ହାତକୁ
କେଉଁଠାକୁ, କେତେବେଳେ ? ବୋଧେ
ଦୁନିଆଯାକର କୁଟାକାଠିର ଗଢ଼ା ଗୋଟେ ନିର୍ଦ୍ଦିଷ୍ଟ ସ୍ଥିତି
ର ପଂଜରା ହାଡ଼କୁ ଯକ୍ଷ୍ମା କୀଟାଣୁ
କୋରୁଥିବା ବେଳେ । ରେ ସମୁଦ୍ର, ମୋର
ସଂପୂର୍ଣ୍ଣ ନିର୍ଭରଯୋଗ୍ୟ ଆସ୍ଥାଟିଏ ଅଛି ଯେ
ତୁ ଅଂତତଃ ଠେଲି ଦବୁ ନାଇଁ
ପୁନଶ୍ଚ ତୋ ମୌନତାର ଜେଲ ଘରକୁ, ବା
ଗୋଟାଏ ମାଦଳ ସମୟର ଭାବ ପଡ଼ିଥିବା
ଜବ୍ଜାର ଦାଂତ ନିକୁଟାକୁ ଯେ;
ମୁଁ ଶୂନ୍ୟଗର୍ଭ କରିଦେବି ତୋ ସାମ୍ରାଜ୍ୟକୁ
ଗୋଟାଏ ଗଂଡୁଷରେ, ଗୋଟାଏ ନିଃଶ୍ୱାସରେ

ରେ ସମୁଦ୍ର, ମୁଁ ନାଚୁଛି ତୋ
ଶତାବ୍ଦୀର ଅସମାନ ଚଟାଣରେ
ଯେ : ନା ହାତ୍ ପାଉଛି ଆକାଶକୁ
ନା ଗୋଡ଼ ପାତାଳକୁ,
କେବଳ ଯା ମୁଦ୍ରା ସବୁ ନିର୍ଦ୍ଦେଶିତ
ଚକାଡୋଳା, ଯୁବତୀର ଗୋଲ୍କାର ସୁଂଦର ବନକୁ !



ଜୁନ୍ ସଂଖ୍ୟା ୧୯୭୬
'ନବରବି'ରେ ପ୍ରକାଶିତ

# ସୂର୍ଯ୍ୟମୁଖୀ

ଯେତେବେଳେ ସମୁଦ୍ର ଚଳୁ କରେ
ପାଂଶୁର ଆକାଶକୁ, ମାଟିର ତପତ ଛାତି
ବର୍ଷାର ପ୍ରତିଶ୍ରୁତିକୁ ଓଟାରି ନିଏ
ଶିକାର ପରି ତା ଅଦୃଶ୍ୟ ଗୁମ୍ଫାକୁ, ତୁ
ଯେତେବେଳେ କେବଳ ଯଂତ୍ରଣାର ସଳିତାକୁ
ବତୁରାଉ ଥାଉ ତୋ ମୌନତାର ଘିଅରେ
ପଂଚପ୍ରାଣ, ପଚିଶି ପ୍ରକୃତିର ଛୋଟିଆ
ଅଂଧାରିଆ ଘର କଣରେ ଯେ;
ଯେତେବେଳେ ଜୀବନ ତମାମର ଆଉ
ସ୍ନେହ, ଶ୍ରଦ୍ଧା ଓ ମିଛ ନିମଂତ୍ରଣର ଲୁହ
ଦିଆସିଲି କାଠି ହେଇ ଜାଳିଦିଏ
ତୋ ସଂକଳ୍ପର ତଣାଣର ସଳିତାକୁ,
ତୋ ବୁଝା ଅବୁଝା ବୋହ, ଅସୁସ୍ଥ
ଗରଗର ଜରୁଆ ପିତାଳିଆ ଓଠକୁ !

ଆଉ ତୋତେ, ତୋ ଉର୍ବର ଇଚ୍ଛାର ମାଟି
ବା ଖାଲ ଢିପ, କ୍ରୋଧର ସମତଳ ଆଭରଣ
ଦୁଃଖର କେଉଏ ଦୂବ ଘାସ କ'ଣ
ଡରଇବ ଯେ; ଅନେକ ଦବଦ ପବନର
ନହକା ହାତ ଲମ୍ବି ଆସିବ
ତୋ ସଳିତାର ଶିଖାର ମୁକୁଟକୁ,
ତୋ ଅକୃପଣ କ୍ଷୋଭର ମଂଦାର କେଶରକୁ

ତୋ ନିଗିଡ଼ା ଆହ୍ଲାଦର କୁରୁଳି ଉଠୁଥିବା
ଅନ୍ତର ଫିସାଦିକୁ !!

ସାରଦିନର ମୋଟବୁହା ଶ୍ରମର ସଫଳ
ଜୁଆଖେଳ, ସାରଦିନର ପଣିକିଆ
ଘୋଷୁଥିବା ପିଲଟିର ଅସ୍ପଷ୍ଟ ସ୍ମରଣ,
ସାରଦିନର ନାଲି ଆଖିଆ ଖରର
ଅଚମିଛ କୁହା, ସତ-ଅସତ ବୁହା ଛୋଟ ନଈ ଧାର
କ'ଣ ବୁଡ଼ାଇ ଦବ, ଭସାଇ ଦବ
ତୋ ଦୀପକୁ? ତୋ ଜଳିଲା ସଳିତାଉ
ଆଂଜୁଳା ଆଂଜୁଳା ପ୍ରୀତିର ମଂତ୍ରପୂତ ନୈବେଦ୍ୟକୁ
ଯେ : ତୁ ତରିଯିବୁ, ତୁ ତରଛି ଯିବୁ,
ତୁ ଛାଇ ଆଲୁଅର ଥରିଲା, ନହକା ନାଆରେ
ଭସିଯିବୁ ଫୁଲ ଚଂଦନର ଅମୁହାଁ ଦେଉଳ ବେଢ଼ାକୁ
ବାରଂବାର ହ୍ଲାଡ ମାରି ଗେଡ୍ଲା ପଣରେ
ଉଠୁଥିବା ନହଡ଼ି କେଉଁ ଦେଉଳର ଅନାମ ଦିଅଁକୁ ।

ମୁଁ ଜାଣେ : ତୋ ମନର ବୃଂଦାବନର ତୁଳସୀ
ଗଛର ଚେର ଚରି ଯାଇଚି କେଉଁ
ତଳକୁ, କେଉଁ ରସାତଳକୁ, କେଉଁ ଧଡ଼ିଥିବା
ଲେଉଟାଣି ଗୀତର ଗୁଂଜରଣକୁ ଯେ :
ତୁ ଅଧୋମୁଖରେ ଅଜାଡ଼ୁଥିବୁ
ଅଜସ୍ର ପ୍ରଣମି, ଧୂଳି ଧୂସର ଗୀତର କୁହୁଡ଼ି
ଗଛର ବସନ୍ତ ମୁହଁକୁ ଢାଂକୁଥିବା ବେଳେ,
ଗାଂରଶିଉଳିର ସିଦ୍ଧ ତପସ୍ୟା
ସାର ରାତିର ଶିରକୁ ମହକରେ ଶିହରାଇ
ଝଡ଼ୁଥିବା ବେଳେ, କଥା ଭିତରର ମାଂଜ
ଅନନ୍ୟ ଶୋକର କୀଟରେ ଡସିଗଲା ବେଳେ ।।



ଏପ୍ରିଲ୍ ୧୯୭୬
'ନବରବି'ରେ ପ୍ରକାଶିତ

# ନିରୁତ୍ତର ବିନୀତା

କି ଜବାବ ଦେବ ବିନୀତା ?
ସେ ଜାଣେ ତ ଚୁପ୍ ଚାପ୍
ଖପର ହାଡ଼କୁ ଚାଟିବା
ଗୋଟାଏ ମସ୍ତବଡ଼ ପାଗଳାମି, ବା
ଅଂଧ ଭିକାରୀର ଗୀତ ଭଳି
ଗୋଟାଏ କରୁଣ କରୁଣ ବିହ୍ୱଳ
ଅସ୍ଥିରତା । କି ଜବାବ ଦେବ
ବିନୀତା ! ସେ ଜାଣେତ—
ଆଖିର ଭଷାଁଙ୍କ ଈଶ୍ୱରଙ୍କ ଚଟ୍‌କାର,
କ୍ଷମାମୟ ଦିନ ରତି, ରତି ଅବା ଦିନ
ମାତ୍ର ଗୋଟେ ଥର ଥର ଶବ୍ଦ ବିନା
କି ଜବାବ ଦେବ ? ବାରଂବାର କାଡ଼ିଛନ୍ତି
ପୁରୁଣା ସାପଟି
ଚୁପ୍ ଚାପ୍ ଚକାଭଡ଼ି ପଡ଼ିଥିବା
କଂକାଳର ପେଟର ଭିତର !
ଜବାବ ନଦିଅ ବିନୀତା (ଜବାବ
ନ ମିଳୁ ଅନଂତ କାଳର
କ୍ଷୁଧିତ ଜଠରରୁ ଓ କିଛି ନକହୁ
ବି ବିସ୍ତୀର୍ଣ୍ଣ ସାମ୍ରାଜ୍ୟର ଅଭେଦ୍ୟ ସମ୍ରାଟ ! )
ଏମିତି ଚୁପ୍ ଚାପ୍ ଗଢ଼ିଥାଉ
ଗୋଟାଏ ଅଖଂଡ ଓ ଅଭିନ୍ନ ହଁର

ଏକକ ସଂଜ୍ଞା ! ବିନୀତା !
ତୁମ ଜବାବର ଅପେକ୍ଷା ଲୋଡ଼ା ନାହିଁ
ଗୋଟିପଣେ ପାଗଳ ମୁହୂର୍ତ୍ତ
ନିଷ୍ପିଷ୍ଟ ଓ ନିକଟସ୍ଥ ସ୍ଥିତିର ଜ୍ୱାଳାରେ
ଓ
ଉନ୍ମାଦ ହୃଦର ଭଉଁରୀରେ, ବିନୀତା ।
ଏମିତି କିଛି ଜାଣେନା ଯେ :
କେବଳ ହସୁଚି
ଦୃଷ୍ଟିଙ୍କର ଦାନ୍ତୁଆ ଛୁରୀରେ ।।



୧୯୭୬ ବାର୍ଷିକ ସଂଖ୍ୟା 'ମୁଖଶାଳା'ରେ ପ୍ରକାଶିତ ।

# କୁହୁଡ଼ି

( ୧ )

ଘୂମନ୍ତ ଇଚ୍ଛାମାନଙ୍କୁ ପଞ୍ଜର
ସତ୍ୟ କଣ ନିଆଁ ଝୁଲ ମୃତ୍ୟୁର
ସ୍ତବ୍ଧ ଉଚ୍ଚାରଣ ବା ଯାବତୀୟ
ଦୁଃଖଙ୍କର ସ୍ଥିର ବିନ୍ଦୁ ଜୀଇବାର
ଲାଭ କ୍ଷତି ମିଶାଣ ଫେଡ଼ାଣ
ବା ଯତ୍କିଞ୍ଚିତ ଲଢ଼ିବାର ଇତିବୃତ୍ତ,
ବହୁ ଦ୍ୱନ୍ଦ୍ୱ ଦ୍ୱିଧା ଏବଂ ସଂଶୟର
ସୁଡ଼ଙ୍ଗ ଖିଲାଣ ବା ହୁ ହୁ ବହୁଥିବା
ବହ୍ନି ପାଣି ଭ୍ରସମାନ ଟାଁ ଗଣ୍ଡା
ଶ୍ଲୀଳ ଏବଂ ଋଜୁ ବେଗବାନ
ସମୟର ସୁଅ । ସତ୍ୟ କ'ଣ
ଚୁପ୍‌ଚାପ୍, ଟୁପ୍‌ଟାପ୍ ଶବ୍ଦର ସନ୍ଦେହ ।
ବା ଝୁଣ୍‌ଝାଣ୍ ଫୁଟା ଚିଣ
ସୂର୍ଯ୍ୟର ଆଲୁଅ ।।

ଇଚ୍ଛାମାନେ ନାନା ମତେ ଲଉରିବେ
ଏଇମିତି ସତ୍ୟ ଏବଂ ବହୁବିଧ ରୂପ
ବା ଅରଣ୍ୟ ଯା ଭିତରେ ଧଂଦି ହେବା
କେଉଁପରି ତା ବୋଧ୍ୟ ଅଥବା ଦୁର୍ଗମ ।।

( ୨ )

ଜାଗ୍ରତ ଇଚ୍ଛାଟି କିନ୍ତୁ
ଉତ୍ତରିବ : ସଁତ୍ୟ ମଣ୍ଡ ସତ୍ୟ ହିଁ ଜାଣେଜ;
ଯାହାର ସାହସ ନାହିଁ ଉଚ୍ଚାରିବ :
"ମୁ ଅଛି । ତେଣୁ ତୁମେ ହଟିଯାଅ
ହେ ଭୀରୁ, ଆରେ ପ୍ରବଞ୍ଚକ, ମୋର ପ୍ରତାପ
ଜାଣି ନାହୁଁ ? ମୁ ଜାଳେ ଜଳାଏ ଓ
ଛିନ ଭିନ କରେ ଅଂଧାରକୁ, ଏବଂ
ତାର ଷଡଯଂତ୍ରେ ଗୋପ୍ୟ ସଂଖ୍ଷଣ
ସମୟ ଗିଳିଲାପରି ମୁହୂର୍ତ୍ତକୁ
ମୁଁ ଗିଳେ ମୌନତାକୁ, ଛଦ୍ମ କାତରପଣ"
ତେଣୁ ଜାଗ୍ରତ ଇଚ୍ଛାଟି
ସତ୍ୟଟିକୁ ଫିଂଗିଦିଏ ଅଂଗୁରୀୟ ପରି
ହୋ ହଲ୍ଲା ହସ ଖୁସି ଜଳ ଭଉଁରୀକୁ
ସତ୍ୟ ଏକ ବାସି ମଣ୍ଡ ବାସି ଫୁଲେ
ପୋତି ଦିଙ୍ଗତା ସେଥା ମୁହଁକୁ ।।

( ୩ )

ସତ୍ୟ କଣ ଖେଳୁଆଡ଼ ?
ଆକାଂକ୍ଷାର ସୂକ୍ଷ୍ମ ତଂତୁ
ଦିଗରୁ ଦିଗନ୍ତ ଯାଏ ବ୍ୟସ୍ତ
ତାର ଦୀର୍ଘ ଛାଇ ଆଲୁଅର
ଲୁଚକାଳି ତାର ଅଚ୍ଛାଦିତ

ଲୁହର ପାଚେରୀ ଘାଟ
ଶିଉଳିର ପଲସ୍ତର
ଗୁରୁବାର ଉଷାର କୁହୁଡ଼ି
ଝୁରୁଥାଏ, ଜୀବନବୃକ୍ଷର ଡାଳେ
ପାଖାପାଖି, ଲଗାଲଗି
ଚୁପ୍‌ଚୁପ ସତ୍ୟ ଏବଂ ଅସତ୍ୟର
ପରକଟା ଶୁଆ ଏବଂ ସାରୀ ।।



"ଦିଗ୍‌ବଳୟ" ୯ମ ବର୍ଷ, ୮ମ ସଂଖ୍ୟା

# ଲଢ଼େଇ

ଭୁଷି ହେଇ ପଡ଼ିଚି ଖବ ।
ଧୋଦୁଅର ଚିର ପଣ୍ଡତରେ
ଆଉଟ୍ ପାଉଟ୍ କେତୋଟି ଶୁଖିଲା ମୁହଁ,
ଯାହାଙ୍କ ମୁଂଡରୁ ଢଳିପାଯାଏ
ଖାଲି ଗୁଜୁରଣ ମେଂଟିବାର
'ଲଢ଼େଇ'ର କଳା ମିଚି ମିଚି
ହାଡୁଆ ଶବ୍ଦ ।।

କି ଲଢ଼େଇ ଚାଲିଚି ଯେ
ନହୁ ନୁହାଣି ଦେଖିବ ବୋଲି ତମା
ଶହ ଶହ ନୋକ ? କି ନିଯୁକ୍ତିର କତୁରୀ
ଚଳୁଚି ଯେ ଟାଣିଟାଣି ନବ
ଶବଦ୍‌କୁ ବିଟ୍‌ରସ୍ତାରେ ? ଏଠି
ଖାଲି ଲଢ଼େଇର ଶବ୍ଦ
ଚୁଟ୍‌ଚୁପ୍ ବହିଯାଉଚି ନାଳରୁ ନଈକୁ,
କ୍ଷେତର କ୍ଷେତକୁ କ୍ଷେତରୁ ବେଡକୁ :
ନହକା ଭିଭର ଖଂଡିଆ ଜାଗାକୁ !
କି ଲଢ଼େଇ ଏ ??

ବୁଣି ହେଇ ପଡ଼ିଚି ଖବ !
କିଏ ସାଉଁଟି ନବ ଏ ଖବର ଫୁଇଂକୁ
ତା ଅଂଟାର ପାଛିଆରେଁ ? କିଏ

ଗୁଂଫି ବସିବ ଗୃଜସହାର
'ଲଢେଇ' ବୋଲି ଶବ୍ଦର ପାଖ ଖାଡ଼ିରେ ?
ବା କିଏ ଅଂଜୁଳା ଅଂଜୁଳା କରି
ବାଲ୍‌ଟି, ଟିଣ, କଂସା ଭରିଦବ
ତା ଫୁଟା ହୃଦୟର ସ୍ଫଟିଜ ଦରଦରେ ?
ଦେଖି ପାରୁନ ବୁଢ଼ା ଗ୍ଲିଚି
ଜଣ ପରେ ଜଣ ! ଟୋପାଏ ହେଲେ ଦରଙ୍କ
କେଉଁଠି ତ ଜମାଟ ବାନ୍ଧି ନାହିଁ
'ଲଢେଇ'ର ଭରପୁର
ଝରୁଥିବା ରକ୍ତର ଝାଳ, ମାଟି ବା ଚଟାଣ ।

କି 'ଲଢେଇ' ଗ୍ଲିଚି ଯେ
ନହୁ ନୁହାଣ ଦେଖିବ ବୋଲି ଜମା
ଶହ ଶହ ଲୋକ । ହଜାର ହଜାର
ପ୍ରଶ୍ନର ପାର୍ଶାରେ 'ଲଢେଇ'
ଗ୍ଲିଚି ତ ଗ୍ଲିଚି ?

କି ଲଢେଇ ଏ ?



# ତିନୋଟି କବିତା

ଯୀଶୁ —

ଯତ ଯତିଆରେ, ତୁ କଣ ଯତଟିଏ
ଝୁଲନ୍ତ ଦଉ କ୍ରୁଶରେ, ଶୂନର ଡାଳରେ
ଛିକପକା ଗୋଲେଇର ମଧ୍ୟ ବିନ୍ଦୁରେ
ସବୁ ରକତ ଥଣ୍ଡା ହେଲା ପରେ
ଆଖି ବୁଜିଦିଏ ଭଅଁର
ପଦ୍ମ କେଶରରେ, ଯେ ସତସତିଆ,
ସବୁ ମିଛୁଆଙ୍କ ହସର ପାରାଗ୍ରଡ଼ି
ଉଡ଼ୁଡ଼ି ଯାଏ କେବଳ ହସରେ
ଓଇଁ ଆସୁଥିବା ସୂର୍ଯ୍ୟର ନାରଙ୍ଗୀ ଓଠରେ ।

କବି —

ତା ଧିନା ଧିନ । ତା ଧିନା ଧିନ ।
ସମୁଦ୍ରର ନାଚରେ, ବର୍ଷାର ଘୁଂଗୁରରେ,
ଖରାର ମେଖଳାରେ, ଗଛ ପତ୍ରର
ସବୁଜ ଶାଢ଼ୀର ଫାଙ୍କରେ । ମହୁଲ ଫୁଲର
ମେଳା ବାନ୍ଧିଥିବା ମାଛିର ନାହୁଡ଼ରେ,
ଅନ୍ଧାର ଓ ଆଲୁଅର ଦୋ ଭକ୍ଷୀ
ବନ୍ଧୁତ୍ୱରେ ତା ଧିନା ଧିନ । ତା ଧିନା ଧିନ ।
ବାହୁଁଣୀର ମିଶାଣ ଫେଡ଼ାଣରେ,

ଶବ ବିନୋଦିଆର ଶବଙ୍କୁ
ଅଶ୍ରୁବ ସଂସାର, ହ୍ୱାଟେର—ଘାଟରେ
ଅନ୍ଧ ପାଗଳାମିରେ, ଶୁଦ୍ଧ କବିତାର
ମନ୍ତ୍ରସିଦ୍ଧି କରୁଣାରେ ତା ଧିନା ଧିନ.....

ମଣିଷ—

ଦୋ ମୁଣ୍ଡିଆ ସାପ, ଙ୍କେଁଚୁଆ ପରି
ମନ ପେଗ୍ସ ପରି ବିବେକ, ଛଞ୍ଚାଣ
ପରି ଇଚ୍ଛା ଓ କଂକି ପରି ସ୍ୱପ୍ନ,
କିମ୍ଭୀର ପରି ସ୍ଥିରତା
କିମିତି ବସା ବାନ୍ଧିଚି ଦେଖ :
ରେ ମନୁଆ, ବନ୍ଧଳା ପାଣିରେ,
ଆଉ ସିଆର କାଟନା । ଜଳନ୍ତା ଜୁଇରେ
ଖଇ କଉଡ଼ି ବିଂଚି ଦେ ଛିଂଚି ଦେ,
ଅଜାଡ଼ି ଦେ ଗଙ୍ଗାର ବକତ ।



୧୧।୪।୭୬ ଏପ୍ରିଲ, ରବିବାର 'ଧରିତ୍ରୀ'ରେ ପ୍ରକାଶିତ ।

# ନିଷ୍ଠୁର ଭାଗ୍ୟ

ମେଘର ପଲଷ୍ଟର୍ ଦିଆ ଆକାଶ
କେମିତି ଫେରାଇ ଦିଏ
ଜହ୍ନରାତିର ଧସ୍ତାଧସ୍ତି ଦୁଃଖକୁ ?
ଫଟା ଆର୍ଶିର ଦି'ଫାଳ ହସ
କେମିତି ଯୋଖିଦିଏ
ଟୁଂ ଟାଂ ରାତିର ସ୍ତବ୍ଧ ଚଇତକୁ ?

ଗୁମ୍‌ଗୁମ୍ ପବନର କାଂଦଣା
କେମିତି ବହୁଟେଇ ଦିଏ
ଉନ୍‌ମୁକ୍‌ତ ବେଣୀର ମଳୟକୁ !
ନିରାପଦ ସ୍ମିତିର ମୁହଁ
କେମିତି ଝାଳେଇ ଦିଏ
ପ୍ରିୟତମ ସୂର୍ଯ୍ୟର ଗାଲକୁ ?

କେମିତି ଉଚ୍ଛନ୍ନା ନଈ
ମୁହଁ ମୋଡ଼ି ଫେରିଯାଏ
ଆପଣାର ଢେଉର ଗର୍ଭକୁ ?
ବା କେମିତି ବିଛୁଡ଼ି ପଡ଼େ
ଫୁଲସବୁ, ମକ୍ କରି
ଡେଇଁଥିବ ମାଳୀର ହାତକୁ ।।



'ଧରିତ୍ରୀ' ତା୨୬।୧୦।୭୪ରେ ପ୍ରକାଶିତ ।

# ଚଢେଇ

ଆଉ ଦୁର୍ମୂଲ୍ୟ ମୁହୂର୍ତ୍ତର ଡାଳରେ
ଗୁମାନରେ ବସିବା କ'ଣ ଦରକାର ? ରେ ବାୟା !
ଦେଖୁଚ ତ ସାବ୍‌ଜା ଆକାଶ
ଓ ସ୍ନେହଜ କାଂଦଣାର ଫସଲ
ତୋ ଥମ ଥମ ଗର୍ଭିଣୀର ଅଂଟାରେ
କେମିତି ତୋଳି ନଉଚି
ଝରି ଝରି ନିଶ୍ୱାସର ଫୁଲକୁ !

ଏବେ ଚଂଚୁ ଖୋଲ ।
ତେଣା ଝାଡ଼ ଓ ତବତବୀ ମେଘର
ପାହୁଂଡରେ ପିଂଧାଇ ଦେ
ତୋ ଆହ୍ଲାଦର ଘୁଂଗୁର

ଆଉ ତ ଛଟ ପଟ ହେବାର ସମୁଦ୍ର
କୂଳ ଲଂଘୁ ନାହିଁ । ଆଉ ତ ସଂଭବ୍ୟ
ଇଚ୍ଛାର ନାଭିର ଛିଦ୍ରକୁ
ଝୁଂପିବାର ଯୁ ନାହିଁ ବୁଢ଼ା ଆଷାଢ଼ର !
ରେ ଭିନ୍ନ ଦେଶୀ ପକ୍ଷୀ, ରେ ଥକିତ, ଚକିତ ବାୟା :
ଏବେ ଚଂଚୁ ଖୋଲ ।
ତେଣା ଝାଡ଼ । ଓ ତା' ପରେ—
କୁ...ଲୁ...କୁ...ଲୁ । ଫୁଡ୍...ଫୁ...ର୍....ଫୁ...



୧୯୭୪ ପୂଜା ସଂଖ୍ୟା 'ଝଂକାର'ରେ ପ୍ରକାଶିତ

# ମନସ୍କ

(ଶ୍ରଦ୍ଧେୟ ବନ୍ଧୁ ପ୍ରଫୁଲ୍ଲ ତ୍ରିପାଠୀଙ୍କୁ)

ଅନ୍ୟ ମନସ୍କ
ଇଚ୍ଛା, ସ୍ୱପ୍ନ, ଆଶା
ବା ଆକାଂକ୍ଷାର ନଈ
ଧୀରେ ଧୀରେ
ବହିଯାଏ କେଉଁଠାକୁ ?
ବର୍ଷାଝର ଦିନର ତାତିକୁ,
ନା ହ୍ରାର ଶୀତଳ ହାଓ୍ୱାର
ନରମ ଜିଭକୁ !
ଶୁଖାଇ ଦିଏ କିଛି କହିବାର,
କିଛି ନୀରବ ରହିବାର ଶବ୍ଦକୁ
ଅନ୍ୟ ମନସ୍କ ଇଚ୍ଛା
ମନସ୍କ ସ୍ୱପ୍ନକୁ ପଛରେ;
ତୁ ଏମିତି ଉଚ୍ଛଳ, ଏମିତି
ଠଗ, ଏମିତି କୁହୁଡ଼ିଆ
ଯେ : ତୋ ମନସ୍କତା ଧୋଇ ହୋଇଯାଏ
ତୋ ଆସିବାର ଚିହ୍ନରେ, ତୋ
ଉଭା ହବାର ଭଂଗୀରେ, ତୋ
ଅଂଗୁଳି ଫୁଟାଇବା ବା ହାଇ ମାରିବା
ମୁଦ୍ରାରେ ।

ମନଙ୍କ ସ୍ୱପ୍ନ ପତ୍ରରେ
ଅନ୍ୟଥା ଇଚ୍ଛାକୁ ବା ଆଖାର
ଅଂକୁରକୁ ଯେ ଫୁଲ
ଫୁଟିବାର ସ୍ୱପ୍ନ କ'ଣ ମନଙ୍କ
ନା ଫଳ ଧରି ପାଚିବା
ମନଙ୍କ, ନା ନିର୍ଧୂମ ଓଦ୍ର ଓଦ୍ର
ଖରର ଢେଂଫରେ
ଓଦଳି ଓଦ୍ରଳି ପଢ଼ିଯିବା
ଅନ୍ୟ ମନଙ୍କ ଇଚ୍ଛା !!



'ଶତାବ୍ଦୀ' ୧୯୭୬ରେ ପ୍ରକାଶିତ ବିପ୍ଳବ ସଂଖ୍ୟା

# ନିକଟତମ

ଏମିତି ଖଂଡି ଉଡ଼ାଦିଅ
ପକ୍ଷୀ, ଏମିତି ଲୋଟଣି ଭୁଂଗୁଥିବା
ଆକାଶୀ ଚଢ଼େଇ—ଧୂଳିରେ, ବାଲିରେ
କାଦୁଅ ପଂକର, ଛନ ଛନ
ଘାସର କଅଁଳ ଆହ୍ଲାଦରେ...ଯା
ଉଡ଼ି ଯା ରେ, ତୋର ଛିଡ଼ି ଯା ରେ
କୁରୁଳୁ କୁରୁଳୁ ଗୀତର ଡୋର,
ଓଃ, ନିଶବଦ ମୌନ ଅହଂକାରର
ଫାଶ ଆଉ କ'ଣ ତୋତେ
ବାଂଧିବ ନା ଛଦିଂବ ଯେ :
ଯା ଉଡ଼ି ଯା ବନସ୍ତକୁ, ନା
ଆଉ କେଉଁ ନୀଳ ଦରିଆର ଆର ପଟେ
ଏକା ଏକା ଠିଆ ହୋଇଥିବା ନଂଢ଼ା
ଗଛର ଡାଳକୁ, ନା
ଦିନ ରାତି ଜଳୁଥିବା ନିଆଁର କେଂଦ୍ରକୁ !

ନା, ନା, ଯା' ନା ରେ ପକ୍ଷୀ ।
ଆ । ବଡ଼ ସୋହାଗର ସବପଣା
ଦେଖିଚି ଏଇ ଉହ୍ନି ଫୁଲିଆ ସଂଜ,
ଏଇ ରଣିକୁହୁଡ଼ି ମିଶା ଅଂଧାର ।।



# ବୟସ୍କା

ବୟସ୍କାମାନେ ଠିକ୍ ବୁଝଂତି
ବୟସର ମାନେ, ବା ଋତୁଂକର
ଶ୍ୟାମଳ ଅତ୍ୟାଗ୍ରହର ଘନିଷ୍ଠ ଅର୍ଥ ।
ବା ଫୁଲ ଫୁଟୁଥିବା ଘଡ଼ିର
କିଟିମିଟିଆ ଅଂଧାରର ସୀତ୍କାର ।।

ସେମାନେ ଠିକ୍ ଠିକ୍ ବୁଝଂତି
ରେଙ୍ଗା ପଇସାର ହିସାବ
କେମିତି ଠିକ୍ ରହେ ନାଇଁ
ଅସାମାନ୍ୟ ମୁହୂର୍ତ୍ତର ପିଲାଂକ
ଖୁଜୁ ବୁଜୁ ହାତର ଠିକଣାରେ !

ବଡ଼ ସାଂଘାତିକ ସତ ଯେ :
ବୟସ୍କାମାନେ ବେଳେବେଳେ
ବୟସର ଗଡୁଥିବା ପେଂଡୁକୁ
ଟାକି ଧରଂତି ଆପଣା ଛାତିରେ,
ଏବଂ ଇତସ୍ତତଃ ଆୟୁଷର ଝୁଲକୁ
ଗୋଟାଇ ନିଅଂତି
ଆପଣାର ଚିର ଶାଶ୍ବତୀର ପଣତରେ ?
ସେମାନେ ବା କେମିତି ଜାଣିବେ !
ଋତୁଂକରି ଶ୍ୟାମଳ ଭୂଇଁର
ଗଦା ଗଦା ପାଉଁଶର ନିଆଁ, ବା
ବୟସର ମାନେ ? ବା, ବୟସ୍କାର

ଅର୍ଥ ଚୁପ୍‌ଚୁପ୍ ପାଇଟି
କରିବାର ଶବ୍ଦ ବା ଗୁମ୍‌ସୁମ୍
ମେଘୁଆ ଆକାଶର
ଝାଲଉଥିବା ମୁହଁ ! ବା
ଫର୍ ଫର୍ ଲାଲ୍ ଝଂଡ଼ାର
ଚିତ୍ର ବିଚିତ୍ର ହାତ କାମର
ଥୋପା ଥୋପା ରକ୍ତର ଛିଦ୍ର !



'ଜୀବନ ରଂଗ' ୧୯୭୫ରେ ପ୍ରକାଶିତ ।

# ଶ୍ଳୋକ

ଏମିତି କୌଣସି ମୁହୂର୍ତ୍ତ ନାହିଁ
ହାତ ପାଆନ୍ତାରେ
ଯେ : ସବୁ ଦଂଶନ୍ତା ଛୁରୀକୁ
ପଠାଇ ଦେବି
ସଂଭାବନାର ଅଂଧାରୀ ପଥରରେ,
ବା ଉତ୍ସୁକ ଆକାଂକ୍ଷାର
ମୁଠିରେ ଚପୁକିନା
ଲୁଚାଇ ଦେବି : ସବୁ ଗ୍ଲାନି,
ସବୁ ମନ୍ତ୍ରନୀୟତାର ତରଳ
ନିଆଁକୁ; ଏକାଂତ ଗୋପନରେ,
ଗୋପନୀୟତାର ଠିକଣାରେ ।।

ଏମିତି କୌଣସି ମୁହୂର୍ତ୍ତ ନାହିଁ
ହାତ ପାଆଂତାରେ
ଯେ : ସବୁ ଆହ୍ଲାଦର କୁଳୁ କୁଳୁ
ନଈର ଗୀତକୁ ଛଂଦିବି
କବିତାର ପ୍ରତିଟି ଲିପିରେ,
ବା ଶ୍ୱାସ ପ୍ରଶ୍ୱାସର ଉଷୁମ
ପ୍ରଣୟର ନିରଭିମାନତାରେ ।
ମୁଁ ଜାଣୁଚି : ମୁହୂର୍ତ୍ତ ସବୁ
ଖୋଜ ପରେ ଖୋଜ ଡେଇଁ
ଏକାକାର ଗୋଟିଏ ବିଂନ୍ଦୁରେ—

ଯାହାର କି ଅନ୍ୟ ନାମ ଜୀବନ
ଓ ଜୀବନର ସଂଭ୍ରାଂତ ପୃଷ୍ଠାରେ
ଲେଖି ଦିଏ ଅନାୟାସେ :
ଆରେ ବାୟା, ଆରେ ଯାଯାବର,
ଜୀବନ ନାମକ ଭିକ୍ଷୁ
ଜୀଇ ଜାଣେ, ବାର ବୁଲ୍ ଷଣ୍ଢ ପରି
ଘୂରିବାର ଦାଂଭିକତା, ଯାଟ ହାତୀ
ରଜାଂକର ଦୁଆରୁ ଦୂଆର ।।



ଧରିତ୍ରୀ' ପୂଜା ସଂଖ୍ୟା ୧୯୭୪ରେ ପ୍ରକାଶିତ

# ଖରାର ଆଷାଢ଼

( ୧ )

ଶୋକର ରେଲିଂ ଧରି
ଖରା ପୁଏଁ କିଏ ? ପୁଷି
ନା ବଉଳିଲା ଗଛର ପତର ।
ଆଡ଼ ମୁହେଁ ଧକଉଚି ଶୋକାତୁରା
ଛାଇ ନା ଆଛନ୍ନ ମୃତ୍ୟୁର ସତ୍ତା
ତେର୍ଛା ହଯ, ଅଧୀରତା ସ୍ୱର ।।

ତାହାକୁ ବୟସ ମାତ୍ର
ଊଣେଇଶି । ତାହାର ହିନସ୍ତା ସ୍ୱପ୍ନ
ଛଟପଟ ଦଂଡଖିରି ତାତିଲା ହାଓ୍ୱାର ।
ଗଛରେ ସୁନେଲି ଖରା
ଟିକ୍ ଟିକ୍ କରେ ତାର ମୁହଁର ପତର ।।

ଶୋକର ରେଲିଂ ଧରି
ଖରା ପୁଏଁ କିମ୍ବୁ ? ପୁଷି,
ନା ମଉଳିଲା ହନୁହାଡ଼ । ଚମ ତଳ
ଶୀତୁଆ ନିଃଶ୍ୱାସ ପରି
ଥୁରୁ ଥୁରୁ, ରଜାଂକର ପାଟହାଡୀ
ଯାତଡାଳ ପଂକରେ ବିକଳ ।।

( ୨ )

ବିନୟରେ ପଚାରିଲି : ପ୍ରିୟଂବଦେ !
ଖର ପିଏ ପାଣି,
ନା ପାଣି ପିଏ ଖର ?
ଝାପ୍‌ସା ଏକ ସ୍ମୃତି ପରି
ଏ ପ୍ରଶ୍ନର ଟଣା ଓ ଓଟର
ତା ଶୋକର ରେଲିଂକୁ କଲା ଫୋଲ୍‌କାର ।
ତାର ସୁନା କ୍ଷେତର ଜଂଗଲ ତଳେ
ବହିଗଲା ଛୋଟ ଏକ ଘନୀଭୂତ ଖରର ଅଷାଢ଼ ॥



ଜୀବନ ରଂଗ' କବିତା ବିଶେଷାଙ୍କ ୧୯୭୪ ଜୁନ୍ ସଂଖ୍ୟାରେ ପ୍ରକାଶିତ

# ପରିହାସ

ଟାପର ମାଇପି ମାନଂକୁ
ପତ୍ର । ଟାପରର ମାନେ କ'ଣ ?
ଟାକୁଆ ଗାଲକୁ ଓ ନମିତ ସ୍ତନକୁ
ପତ୍ର ; ପତ୍ର ହାଡ଼ୁଆ ଦିହ
ଓ ବଂକା ବାଡ଼ିର ଖୁରକୁ; ପତ୍ର
ଧୂଳିଗୁଆ ଓ ମଳିଚିଆ ଆଇନା ବା
ଦାଂତଭଂଗା ପାନିଆକୁ ; ପତ୍ର
ଟାରର ମାନେ କ'ଣ ? ଟାପର ।
ପତ୍ର ଏମ୍. ଏ. ପାଶ୍ କଲା ବୋହୂର
ଗୋଡ଼ ଅଳତାକୁ ଓ ତାର
ପୋଷମଣା ଓ୍ୱକରର ମକ୍ସ କାମିଜିକୁ
ଯେ ଟାପର ମାନେ କ'ଣ ? ?

ପତ୍ର ଧୀରେ ଧୀରେ ପବନକୁ,
ଗୁମ୍‌ସୁମ ସମୟକୁ, ଗୁଲୁଗୁଲି
ଖେଦୁଅ ଖରକୁ, ପତ୍ର
କାଂଜିଆଉଦାରେ ହଂବାଳୁଥିବା
ଉପାସିଆ ବାଛୁରୀଲଗା ଗାଈକୁ
ଓ ଉଡ଼ି ଆଉଥିବା ପଲ ପଲ ବଗର
ଛାଇକୁ, ଡାଂକି ଦେଉଥିବା
ମେଘର କାଁଦୁରା ହସକୁ ଯେ ;
ଟାପର ମାନେ କ'ଣ ?

ଟାପରର ମାନେ ବୁଝେ କିଏ ?
ବୁଝେ ଷୋଡ଼ଶୀ ଶାଳୀ, ନା
ବୁଢ଼ୀ ଘରଣୀ ? ନା
ଯୌବନର ଚଇତାଳି,
ନା ଖଳା ଖଉଳର ସ୍ତୂପ,
ଚୁଡ଼ିର କିଂକିଣୀ । ନା
ଟଡ଼ିରଂକୁଣୀ ସ୍ଫୁଟିର
ଦାଂତ ଦରଜାକୁ ଭିଡ଼ିଥିବା
ଲୁହାର କିଳେଣୀ ।।

ଟାପର ମାନେ କ'ଣ :
ଲୋଟଣୀ ପାର ନା ଯମୁନାର ସୁଅ ?
ନା ଇଜି ଚେୟାରରେ
ଝୁଲୁଥିବା, ମିଟି ମିଟି ରହୁଁଥିବା,
ଚଂଦା ମୁଂଡ, ନା ଚୋକା ନାଡ଼ିର
ବେପରୁଆ ରଲିର ଗଡ଼ୁର ବିଷଦାଂତ !!

ଟାପର ମାନେ କ'ଣ ?
ଯୋଡ଼େଇ ହୃଦୟର ଜଖମ୍, ନା
ନାଲି ବତୀର ଶ୍ୱାସ, ନା
ନଟୁ ପରି ଘୂରୁଥିବା
ବଂଚିବାର ବିନ୍ଦୁଏ ନିଆଁ ।।



'ଅକ୍ଷର' ପୂଜା ସଂଖ୍ୟାରେ ପ୍ରକାଶିତ

# ତିନୋଟି କବିତା

**ପ୍ରେମ—**

ଶବ୍ଦଟି ଉଚ୍ଚାରିଲା ମାତ୍ରେ
ସୂର୍ଯ୍ୟର ପ୍ରତି ଶବ୍ଦ
ମିଳେ ନାହିଁ । ଜୀବନର ଖୁଷାକୋଷ
ଆଚ୍ଛନ୍ନ ହୋଇଯାଏ
ଗୋପାଳିଆର ନିପଟ ମଫସଲି
ସାଧନାର ମୁଦ୍ରାରେ ।

ଅଥଚ, ଅନ୍ଧାରର ପ୍ରତି ଶବ୍ଦ
ଛପିଯାଏ ଜୀବନର ପ୍ରମୋଦ
ଅଭିଧାନର ପୃଷ୍ଠାରେ ।
ସବୁ ବର୍ଣ୍ଣ, ଡରୁଆଲ ଓ ରଙ୍ଗିନ
ଫୁଲର ବ୍ୟାବହାରିକ ଅର୍ଥ
ବୁଝାପଡେ ସମୟର ବ୍ରଣମୟ
ଗଂଭୀର ମୁହଁରେ । ଲୁହର
ଜନ୍ମ ତିଥି, ବାର ଓ ନକ୍ଷତ୍ରର ଲିପି
ରେ ମିଳେଇ ଯାଏ 'ମୁଁ' ନାମକ
ବାତୁଳ ଶବ୍ଦ ॥

**ଚୁମ୍ବନ—**

ମୋର ଗୋଟାଏ ମାତ୍ର
ଦୁର୍ଦ୍ଦଂଡ ଇଚ୍ଛା : ତୁମ ପାଦରେ

ଅଳତାକୁ ଚୁମିବା ପାଇଁ ।
ତୁମ ବାଇଶି ପାବଛର ଧୂଳି
ରେ ଧୂଳିମୟ ହେଇ
ଗ୍ଲାନି ଓ ଗୌରବର ସମୁଦ୍ରରୁ ଉଠି
କୂଳର ରୌରବ ନର୍କକୁ
ଚୁମିବା ପାଇଁ ମୋର ଅଖଂଡ ଆଗ୍ରହ ।

ଏବଂ ତୁମ ମୌନତାର
ମେଘନାଦ ପାଚେରୀର ପ୍ରଥମ
ପଥର ଖଂଡକୁ, ଓ
ଶିଳ୍ପୀର ନିଷ୍ଠୁ ପତାକୁ
ଚୁମିବା ପାଇଁ
ଏକାନ୍ତ ଅକୁଂଠ ଆଗ୍ରହ ମୋର ।

କିଂତୁ, ଚୁଂବନର ଜ୍ୱାଳା
କା'ଣ ଛିଡ଼ାଇ ଦିଏ ଲୁହାର ଶିକୁଳି ?
କା'ଣ ମଡାଇ ଦିଏ ମଜା ଦେଖିବାର
ଭେଳା ଭେଳୀ ଦୃଷ୍ଟିର ପତଂଗକୁ ?
କା'ଣ ହଜାଇ ଦିଏ
ଗୋଟାଏ ଅହଂଶାଣିତ
ଦୁର୍ବାର ର ସ୍ୱପ୍ନର ଗୁଂଜରଣକୁ ।।

## ଜିଭ—

ଜିଭ କାଟିଦିଅ । ଖଂଡିଆ କରିଦିଅ ।
ନୂଆ କଲିଚୂନଦିଆ ଖିଲି ପାନରେ
ଘାଉଡ଼ କରିଦିଅ ଜିଭକୁ, ବାଉଁଶ ପାଡିଆରେ
ଛେଲି ପକାଅ, ଛେଦି ପକାଅ ଜିଭର ମାଂସକୁ,
ରକ୍ତକୁ : ତାର କେଉଁ ହାଡ଼ଅଛି ଯେ
ଦଂଥଡା ହେଇଯିବ ବେଲ୍ଟିର ଦାଢ, କୁଂଥା ହେଇଯିବ
କୁଂଥଉଥିବା ବୟସ୍କ ସ୍ୱପ୍ନ୍ୟା ଦାଂତରେ ବିଦାରି
ଦିଅ, ତା' ନିଲଠା ସୁଆଦଚଖା ଦ୍ୱଂଉପଣକୁ

ଯେ : ଆଉ ଥିବ୍ ନା ତୁମ ଚଉଦ ପୁରୁଷଙ୍କୁ
ହକାଳିବ, ତୁମ୍ ଓଠରୁ, ଗାଲରୁ, ସ୍ତନରୁ
ଅଂଟାରୁ, ଜଂଘରୁ ଶୋଷିବ ମହୁ ।
ମହୁ ନୁହଁ ତ ବିଷ । ବିଷକୁ ପୀୟୁଷ ମଣିବାର
କେଡ଼େ ବହପ ଏ ଜିଭର । ଯେ ଜାଣି ପାରେ ନା
ସପ୍ତଚଂଡୀ ଓହ୍ଲାଇ ଆସଂତି ମର୍ତ୍ତ୍ୟକୁ
ତାରି ଦୟାରୁ, ଦୟାର ବଚନିକାରୁ ;
ମୋହର ଅଗଣାକୁ, ଦେହର ପ୍ରଗଣାକୁ,
ଦେହାତୀତର ଗୁଣାଗୁଣ, ଖୁଣାଖୁଣ
ଗୋଟାଏ ସ୍ଥିତିକୁ ଯେ : ଜାଣେ ନାଇଁ
ନିଜ ଗାଁ, ନିଜ ଘର, ବାପ ଗୋସିଁ ବାପ ନାଁ ;

ଜିଭ ଅଛି ବୋଲି ପିଲାଦିନେ
ସାଂଗମାନେ କହୁଥିଲେ—ଜିଭଧରି କହ କହ
ପଡ୍ ପଢ୍ 'ମାଙ୍ଗିଆ'—କି ବିଭତ୍ସ ସେ ଧ୍ୱନି ।
କାଟିଦିଆ, ଛେଦିଦିଅ ଜିଭଟାକୁ ;
ସବୁ ଦୁଃଖ, ସବୁ ସୁଖ, ସବୁ ବାହାପିଆ ପ୍ରତିଶ୍ରୁତିର
ସବୁ ଫାଂକା, ହାଲ୍କା କଟୁ, ମଧୁର ଥିଲା ନ ଥିଲା
ସ୍ୱାଦ ଗୁଂଥେ ଜିଭ । ଜିଭଟିଏ ଅଛି ବୋଲି
ଧକଉଚି ପାପର ଭଂଡର ଘରେ
ଅସରପି-ବ୍ରହ୍ମ ।।



'ଧରିତ୍ରୀ' ୧୯୧୬ ସ୍ୱାଧୀନତା ଦିବସ ବିଶେଷାଙ୍କ

# ଦୁଇଟି କବିତା

## ଏକ : ନାଆଁ

ତା ଜନ୍ମର ଇତିହାସ
ମୋତେ ଜଣା । କି କୁହୁକ
ପେଡ଼ି ଭିତରେ, କି ପାକ୍ଷିର ପେଟରେ,
କି ପଥରର ମୁଗୁନି ଛାତିରେ,
ଦୁଃଖ ଓ ସୁଖର ଭ୍ରୂକୁଟି ମଝିରେ,
ଅନଟନର ଖୋଲା ପଡ଼ିଆର
ତାତିରେ ସେ ଦୌଡ଼େ । ଦୌଡ଼େ
ତା ଇତିହାସର ସାଂଭ୍ରାଂତ୍ୟ, ତା
ମୌନ ରକ୍ତ ବୀର୍ଯ୍ୟର ମୁଖରତା ।
ତା ଗୃହିଣୀର ତିର୍ଯ୍ୟକ୍ ଧନୁର୍ବାଣ ।
ତା କମାଣର କଷାକଷି ବିସ୍ଫୋରଣ
ର ଇତିହାସ । ମୋତେ ଜଣା ।।

## ଦୁଇ : ସତ୍ୟ

ଯେ ଅଂଧ, ଯେ କଂଧ :
ସେ ଭୀମ ଭୋଇ । ସେ ଅଲେଖ
ଗୋସେଇଁ, ସେ ସାଇଁ ସାଇଁ
ପବନରି ଥରିଲା କଣ୍ଠର
'ବୋଲି'-ମୃତ୍ୟୁ ତାର ନାଇଁ ।

ଯେ ନିଶ୍ଚଳ, ଯେ ଥିର, ଯେ ସ୍ତବ୍ଧ !
ସେ ସତ୍ୟ, ସେ ମୃତ୍ୟୁର
ବିପରୀତ
ଗୋଟାଏ ରୁଦ୍ର ଝଟାସୁ ! !

ଏନ୍. ସି. କଲେଜ, ଯାଜପୁର—ଓଡ଼ିଆ ସାହିତ୍ୟ ସମାଜର
ମୁଖପତ୍ର 'ପ୍ରଜ୍ଞା'ରେ ପ୍ରକାଶିତ–୧୯୭୬

# କ୍ରୀତଦାସ

ମୁଁ ତୁମ ଦାସାନୁଦାସ, ଆଜ୍ଞାବହ
ଭୃତ୍ୟ ଏବଂ ପୁରୁଷାନୁକ୍ରମ
ଗୋଲାମିର ବୋକ୍‌ସ୍‍ ? ଯାହା ନିତେ
ଶତାବ୍‌ଦୀ ଶତାବ୍‌ଦୀ ଧରି
ପୂର୍ବରୁ ପଶ୍ଚିମ ଏବଂ ପଶ୍ଚିମରୁ ପୂର୍ବ
ଘୂରୁଅଛି ପିଂଧି ତୁମ ଅନୁଜ୍ଞାର ଲୋହିତ ମୁକୁଟ ।

ତୁମେ ସ୍ଥିର, ନିର୍ବିକାର, ସ୍ଥିତପ୍ରଜ୍ଞ
ବୁଦ୍ଧ ପରି ବେଠାଉଚ
ବଟବୃକ୍ଷ ଛାଇର ପାହାଚେ,
ବେଳେ ବେଳେ ଅଧାଖୋଲା ଆଖିରେ ବି
କଳୁଚ ମୋ ବୋଝବୁହା ଦେହର ସାମର୍ଥ୍ୟ,
ଓ କେବେ ଛପି ଛପି ନିଭୃତ ଶବ୍‌ଦରେ
ଟାଣୁଅଛ ପଛପଟୁ ମୋ ସପ୍ତମ ଅଶ୍ୱଂକର ଖୁରା ।

ତଥାପି ବୁଝ ନି ତୁମେ ଏ ଅଧମ
ଆଜ୍ଞାବହ, ନିତ୍ୟ ପଲକର
ରକ୍ତୋବତୀ ଦୁଶ୍ଚିନ୍ତା ଓ କ୍ଳାଂତିଧୂଆ
ମନର ଅବଶ ଦୁଃଖ । ବୁଝ ନି ଏ
ଅହର୍ନିଶ ଘୂରୁଥିବା ଯୋଗୀର ଔଦ୍ଧତ୍ୟ
କିଂବା ତାର ଜଉପ୍ତ, ବର୍ବର ସ୍ନେହ —
ହେ ପ୍ରାଜ୍ଞ, ସମ୍ରାଟ, ଈଶ୍ୱର ।।

ମୁଁ ତୁମ ଦାସାଃନୁଦାସି,
ଗୋଲ୍ମୀର ଚିତ୍ରକର ।
ଅସଂଖ୍ୟ ବୃତ୍ତର ହ୍ରଦ
ଢେଉର ହୀରକ । ମୁଁ ତୁମ ଅଂଧ-
ଶତାବ୍ଦୀର ଜ୍ୟୋତିଷ୍ମାନ୍, ଜ୍ୱଳଂତ
ଓ ଅଖଂଡ ମଂଡଳ,
ଏବେ ମୋତେ ମୁକ୍ତି ଦିଅ
ଲୁମାଗଡ଼େ ପଥର୍ରୀ ନିର୍ଦ୍ଦିଷ୍ଟ ଅକ୍ଷରୁ
ହେ ପ୍ରାଜ୍ଞ, ସମ୍ରାଟ, ଈଶ୍ୱର ।।



'ସହକାର' ଡିସେମ୍ବର ୧୯୭୩ ସଂଖ୍ୟାରେ ପ୍ରକାଶିତ

# ସୂର୍ଯ୍ୟାସ୍ତ

ମୋ ଫେରିବା ଅନିଶ୍ଚିତ
ନଦୀର ଗର୍ଭରୁ, କିଂବା
ଛୋଟ ଏକ ମୃଦଂଗର ଶେଷ ସୀମାଂତରୁ,
ଅଥବା ଘୂର୍ଣ୍ଣିର ମୋଡ଼ୁ
ଧୂଆଁଳିଆ ଚକ୍ର କୁଂଡଳୀରୁ,
ଫେରିବା ନିଶ୍ଚିତ ନୁହଁ
ଆକସ୍ମିକ ନିଷ୍ଠୁରତା, ଧୂର୍ତ୍ତ ଏକ ସମୟର
ବିଷଣ୍ଣ ମୁଠାରୁ ।।

କି ଅଦ୍ଭୁତ ବାଗ୍ମିତା ! ଖିଆଲ ଓ
ବର୍ଣ୍ଣହୀନ ଚିତ୍ରର ସଂଗୀତ । ଯାହା ମୋତେ
ଡାକୁଥାଏ ଅରଣ୍ୟର ସ୍ତବ୍ଧ ସଂଜ ପରି ।
ଦୈର୍ଘ୍ୟହୀନ ରତିର ଦେହାଂତ ପରେ
ସୂର୍ଯ୍ୟ କ'ଣ ବୁଡ଼ିଯିବ
ମୋ ସାଥିରେ ନଦୀର ଗର୍ଭରେ
ଛାୟାହୀନ ଜଂଗଲର ନିର୍ଜନତା ଚିରି !

ମୁଁ ତେବେ ଅସ୍ତ ଯିବି ?
ପବନର ହାଲ୍କା ଆକାଶ
ଫାଟିଯିବ । ନାରଂଗୀ ଫଳର ଶୋଷ
ଉଦ୍‌ଭସିବ । ଦିଗ୍‌ବଧୂ କି ଦିଗଂବରୀ
ହେଇ ହେବ ଛିଡ଼ା ? ସ୍ୱର୍ଗଦ୍ୱାର

ଆଡପ ଆତ୍ମେ ଖୋଲିଯିବ । ବୃଦ୍ଧ ତପସ୍ୱୀର
ଛଳ ଛଳ ଆଖି ଯିଏ ମୋର ଆଖି
ହେବ ଏକାକାର । ମୁଁ କି ସତେ
ଅସ୍ତ ଯିବି ସୂର୍ଯ୍ୟ ପରି,
ଛାୟା ଘନ ଅରଣ୍ୟର ଘଡ଼ିର ଭିତର ॥

ନିରର୍ଥକ, ମୂଲ୍ୟହୀନ ସାଂତ୍ୱନା ବା
ଦୁଃଖର ଜଳଂତା ସୂର୍ଯ୍ୟ
ଅସ୍ତ ଯିବ ଅରଣ୍ୟରେ, ଘଡ଼ିର ହୃଦରେ
କିଂବା ବଣଂବଦ ଶୋକର ମେଘରେ :
( ତବେ ମୁଁ କି ଅସ୍ତ ଯିବି
ଅନ୍ତର୍ହିତ ଦୃଶ୍ୟ ଏବଂ ଈଶ୍ୱରଂକ ସଂଧ୍ୟାର ଆସରେ ॥

ମୁଁ କି କା'ଣ ସୂର୍ଯ୍ୟ ? ଯେ କି
ଅସ୍ତ ଓ ଉଦୟ । ପାପ ଏବଂ ପୁଣ୍ୟର
ଉଦ୍‌ଭିନ୍ନ ବିଂଦୁ, ମଂଦାର ଓ
ଗଂଗଶିଉଳିର ଚିତ୍ରିତ ଗଜରା ହାର ?
ବତକର ବିକୃତ ଶବ୍ଦ ଏବଂ
ଝିଂକାରୀର ଛାତିଫଟା କାଂଦ ! ମୁଁ କି
ସତେ ଅସ୍ତ ଯିବି ରତି ନ ପାହୁଣୁ ?
ବାଟଚଲା ବାଟୋଇର ନିର୍ଲିପ୍ତତା,
ଘରମୁହାଁ ଗୀତ ଶୁଣୁ ଶୁଣୁ ॥



"ମୃଣାଳ" ୧ମ ବର୍ଷ ୧ମ ସଂଖ୍ୟାରେ ପ୍ରକାଶିତ ।

# ତୀର୍ଥ କ୍ଷେତ୍ର

ବ୍ୟାହତ ବା ଅବ୍ୟାହତ
ଧୂଳି ଝଡ଼, କୃତ୍ରିମ ହସର
ଦ୍ୱିପହର ଥଂଡା ହୁଏ
ମୋର ରିକ୍ତ ଗରମ ନିଶ୍ୱାସେ ।
ପ୍ରତିଶ୍ରୁତି ହୀନ ସଂଜ
ଭୁଂଗିପଡ଼େ ଅନାବନା
ସ୍ମୃତି କିଂବା ଅଣାୟତ୍ତ
ଝିଲ୍ଲୀର ଆଓ୍ୱାଜେ ।।

ସବୁ ସତ୍ୟ, ଅନଭିଜ୍ଞ
ମଣିଷର ଦୈନଂଦିନ
ଦୃଶ୍ୟହୀନ ଦୃଶ୍ୟର ସମୁଦ୍ର
ଗୋପ୍ୟ ବସ୍ତୁ ପରି ଢଳେ
ଅହଂକାରେ, ପ୍ରାଚୁର୍ଯ୍ୟର
ମୁକାବିଲା ସ୍ୱର୍ଣ୍ଣିତ ସ୍ୱର୍ଗରେ ।

ବ୍ୟାହତ ବା ଅବ୍ୟାହତ
ଧୂସର ପ୍ରତୀକ୍ଷା ମୋର
ଦୀର୍ଘଶ୍ୱାସୀ ଝଡ଼ ପରି
ଶାଂତ ହୁଏ, ଘନନୀଳ
କେଶର ଅଂଧାରେ ।

ସମସ୍ତ ଚିତ୍ରିତ ଛିଟ,
ସାନ ବଡ଼ ଝୁଲି ଡଂଗା
ଏକତ୍ରିତ ଶୂନ୍ୟତାର ବଣ

ଉଚ୍ଚକିତ, ବିଭକ୍ତ କଫିନ୍ ତଳେ
ଶୀତ ଖଂଚ୍ଛେ ପ୍ରଶମିତ ଶିଖାର ବନ୍ୟାରେ ।

ଅପାଂକ୍ତେୟ ମୁହୂର୍ତ୍ତ ଓ
ସୀମାହୀନ କ୍ରମଶଃ ଯନ୍ତ୍ରଣା
ଉପବାସୀ, ଦୁଃଖୀ କାଳ ପରି
ଶୋଇପଡ଼େ ମୁଷ୍ଟାମାଟି
ଭଣ ଭଣ, ଅଧାଜଳା ମଢ଼ର ଗଂଧରେ ॥

ବ୍ୟାହତ ବା ଅବ୍ୟାହତ
ଗାଢ଼ନୀଳ ରାତିର କାଂଦଣା
ଧରି ଶୁଭେ ନିଶବଦ୍‌ରେ
ମୋର ସୁପ୍ତ ଚେତନାର
ପ୍ରାର୍ଥନାର ସ୍ୱର ।

ମନେ ହୁଏ ମୋର ମୃତ
ମୌସୁମୀ, ଅସତର୍କ ସ୍ନେହାଶୀଷ ପରି
ବହମାନ ସମୟର
ନିଭୃତ ଶୃଂଗାର ॥

ବ୍ୟାହତ ବା ଅବ୍ୟାହତ
ଦୃଷ୍ଟିହୀନ ଦୃଷ୍ଟିର କରୁଣା
ଝରିପଡ଼େ, ଝୋଲ୍ଲମର ଘଡ଼ି ପଡ଼େ ଫିଟି ।
କି ସୁଖଦ ଆବେଗରେ ?
ଅଂଧୀଭୂତ, ସମର୍ପିତ ଦୃଷ୍ଟିର ଧୂଆଁରେ ।
ମୁଁ ଏକ ବିଦାୟୀ ସୂର୍ଯ୍ୟ :
ତା ଆଖି-ଆକାଶେ ଝୁଲେ;
ଚିଘଧୋତି, ସଫାହସ
ପିଂଧା ଏକ ନୂଆ ଗୋଲକରେ ।

# ନିକଟ ସଂପର୍କ

॥ ୧ ॥

ବାରଂବାର ଆଘାତ କର
ବଂଦ ଦରଜାକୁ, ବା
ଝାଉଁଳାଅ ଗ୍ରିନ୍ ସ୍କ୍ରିନ୍,
ଉଡ଼ଂତ ମେଘକୁ,
ବାରଂବାର ଛୁପି ଧର
ବିସ୍ତାରିତ ଦୃଶ୍ୟର ଚୂଡ଼ାକୁ
ଯେ : ସେ ଭୁଲିଯିବ
ନିଜର ସଂଜ୍ଞା, ନିଜର ନିର୍ଭୁଲ ପରିଚୟ ।

॥ ୨ ॥

ସେ କ'ଣ ଭୁଲିଯାଏ
ଦୃଶ୍ୟାବଳୀ, ଜିଦ୍‌ଖୋର ହସର
କାଂଦଣା । ସେ କ'ଣ ରହସ୍ୟର
ଛବିପେଂଥା ଝୁଲୁଛି ପିଠିରେ
କାବୁ କରେ ବଂଦ ବାକ୍ସ ?
ରଜାଂକର ଦିବ୍ୟ ସିଂହଦ୍ୱାର !
ବାରଂବାର ଆଘାତ କର
ତା ନଗଣ୍ୟ ସତ୍ୟକୁ ଯେ :
ସେ ଭୁଲିଯିବ ନିଜର ସଂଜ୍ଞା
ନିଜର ନିର୍ଭୁଲ ପରିଚୟ ।

।୮୩ ।।

ପାଖକୁ ଡାକିଆଣ
ରେ ଗ୍ରଟ୍ଫୁକାର, ଦେଖିନ୍ନ :
ଛିନ୍‌ଛତ୍ର ତାର ଚଂଦନ କାଠ, ପେଡ଼ି
ଏବଂ ଫୁଲ ବା ସିଂଦୁର, ଦୀର୍ଘଶ୍ୱାସର
ଗୋଇଠିରେ ଦୂରକୁ ଠେଲିଦିଅ, ଦେଖିବ
କି ଅଦ୍‌ଭୁତ୍ ଆଲୁଅରେ ଭରପୂର
ତା' ଘର ଦ୍ୱାର, ଚିହ୍ନା ଏବଂ
ଅଚିହ୍ନା ଅଂଧାର ।

# ଅଧୀଶ୍ୱର

ମୋ ବିନା, ମୋ ରତ୍ନମୁକୁଟ
ଶୋଭେ ଶୂନ୍ୟ, ଆକାଶର ଶିର ।
ମୋର ଦମ୍ଭ, ଗର୍ବର ପାଚେରୀ
ସମୟର ଲୁଣି ହାଓ୍ୱା
ଆଘାତରେ ଝୋଇଯାଏ ଚୂର ।।

ଅକ୍ଷୌହିଣୀ ସୈନ୍ୟର ଚିତ୍କାର
ସାଥେ ମିଶିଯାଏ ହ୍ରେଷା ଏବଂ ଜନମତ
ମୋରି ଆଦେଶନାମା ଲିପିର ପୃଷ୍ଠାରେ !
ମୁଁ ଏକ ଅକିଂଚନ, ବାର ଲକ୍ଷ
ହସ୍ତୀର ମଂଥନେ
ଟଳମଳ ହୁଏ ମୋର ସାମ୍ରାଜ୍ୟର ସରୋବର
ହୁଏ ଏକ ସାଂତ୍ୱନାର ଜୀର୍ଣ୍ଣ ବାଲୁଚର !
ମୋ ବିନା, ମୋ ରତ୍ନମୁକୁଟ ଶୋଭେ
ରଂଗ ଓ ବେରଂଗ ଫୁଲ
ବୃକ୍ଷ ଓ ପତର ।।

ମୋ ସମ୍ମୁଖେ ଖୋଲେ କିଏ
ପାଟଛତି, ତରବାରୀ, ବିଜୟର ଟୀକା;
ଭାଂଗିଯାଏ ଅସଂଯତ ହସ ଏବଂ
ନୃତ୍ୟର ଅଶ୍ଳୀଳ ଭଂଗୀ, ବଂକାଟଂକା
ବର୍ଚ୍ଛାର ଚୁଂବନ । ମୋ ପାରୁନି
ତନୁଜାନୁ, ନଗ୍ନ ଏବଂ ସମର୍ପିତ ଇଚ୍ଛାର ଅଂଗନ ।
ଟକମକ ଫଟେ ରକ୍ତ, ଛିଡ଼େ

ଦ୍ୱଂଦ୍ୱ, ସଂଶୟ ଓ ଅଂଧାରର ଜାଲ,
ଚଉଦିଗେ ଔଦ୍ଧତ୍ୟର ଶରଶଯ୍ୟା,
ସଂଭ୍ରମର ଢାଳ !!

ମୋ ବିନା, ମୋ ରତ୍ନମୁକୁଟ
ହୀରା, ନୀଳା, ମୋତି ଓ ମାଣିକ୍ୟ
ଛୋଟ ଛୋଟ ସ୍ନେହଶୀଳ ଦୃଷ୍ଟି ହୋଇ ଫୁଟେ ।
ଯେଉଁ ଆଡ଼େ ଚାହିଁଲେଁ
ଶତ୍ରୁର ଚମକ ବାଜେ ? ରକ୍ତମୁଖା ଯୋଗିନୀର
କଟାମୁଂଡ, ନାଳି ଛିଟ, ଶୂନ୍ୟର ଥାଳିଆ
ପବନର ସୁଅକାଟି ଉଡ଼ାଣିରେ ଭସେ ।।

ମୋ ବିନା, ମୋ ରତ୍ନମୁକୁଟ
ଖସିପଡ଼େ ମୋ ହାତକୁ, ମୋରି ସମର୍ଥ
ସ୍ୱପ୍ନ ଏବଂ ଇଚ୍ଛାର ତାଳକୁ ।
ମୋ ସମ୍ମୁଖେ ନିଷ୍କଳୁଷ ଲୁହର ଗୀତକୁ
ଏବେ କିଏ ଖଂଡିଦିଏ
ହୀରା, ନୀଳା, ମୋତି ଭଳି ମୋରି ଛତ୍ରରେ ।
ମୁଁ ଅବିକା ଝୁଲୁମଣି ଝୁଲୁଉଚି
ମୋ ଗୈରିକ ଚେତନାର
ନିଶ୍ଚଳ ଖୁଣ୍ଟରେ ! ମୋ ସାମ୍ରାଜ୍ୟ,
ପ୍ରତିପତ୍ତି, ଅକ୍ଷୌହିଣୀ ସୈନ୍ୟର ପାଚେରୀ
ମୋ ଭିତରେ କି କୁହୁକେ ହୁଏ ରୂପାଂତର ?
ଆଶ୍ଚର୍ଯ୍ୟ ସବୁଠୁ ବେଶି
ପାହାଡ଼ ମଥାରୁ ଦିଶେ
ଉନ୍ନତ ଓ ଅନୁନ୍ନତ ପୃଥ୍ୱୀ ଏକାକାର ।।



'ସହକାର' ୧୯୭୩ ଫେବୃୟାରୀ ସଂଖ୍ୟା

# ନିଜ ସପକ୍ଷରେ

କେ କାହାର ? କେହି ନୁହେଁ
ଏକାଂତ ନିଜର । ନିଜର ସାବ୍ୟସ୍ତ କର ।
ଦିଆ ନିଆ, ଫେର ବଦଳର । ମୋ ଛଡ଼ା
ସ୍ତ୍ରୀ, ଝିଅ, ଜ୍ଞାତି, ପରିବାର—
ମୂଢ଼ମତି ଏ ସମାଜ, ବଇଠକ ଘର
ନିଷ୍ଠୁରି ଶାଣିର ଗାର ।
ଶୂନ୍ୟ ଆକାଶର ବକଟେ କାଳିଆ ମେଘ
ଦୂର ଜଂଗଲର । ସାପ ପର, ମିଷ୍ଟଭାଷୀ
ଏ ମଣିଷ ଜାତି । ଜଳଂତା ନିଆଁର ଦୁଃଖ
ଭୟାତୁର ଦିନର ପାହାଂତି ॥

କେ କାହାର ? କେହି ନୁହେଁ
ଏକାଂନ୍ତ ନିଜର । ନିଜର ବଂଚିବା ଲୋଭ
ଦୟନୀୟ, କରୁଣ ଓ ନିର୍ଯାତିତ
ନୁହେଁ ବୋଲି ମୁଁ ସଂପର୍କ ହୀନ !
ଏପରିକି ସ୍ମିତିହୀନ, ମମତା ବିହୀନ
ନିଷ୍ଠୁର ନିର୍ମମ ଏକ ମଣିଷ ମୁଁ ଦୟାର୍ଦ୍ର ଲଜ୍ଜିତ
ଓ ଦ୍ରବୀଭୂତ ମୋ ପୁରୁଷକାର ।
ମୋ କବିତା ଦୁଃଖ ସୁଖ,
ପ୍ରୀତିମୟ ମୂହୂର୍ତ୍ତର, କଲ୍ୟାଣୀର କ୍ଷୀର ॥

କେ କାହାର ? କେହି ନୁହେଁ
ଏକାଂତ ନିଜର ! ଛଳନାର ଭଉଁରୀରେ

ମଣିଷତା ହଜିଯାଏ । ଲଢ଼ିବାର ଢଙ୍ଗ
ଚାଲିବାର ଦଂଶନରେ ହୁଏ ଉଗ୍ର,
ହୁଏ ସ୍ଥୂଳ ପୃଥ୍ୱୀର ପରିଧି,
କ୍ଷମତାର ହତିଆର ପିନ୍ଧଯାଏ, ଚଳୁ କରେ
ମଣିଷତା-ରକ୍ତ, ବୁନିଆଦି ।।

କେ କାହାର ? ମୁଁ ତ ନୁହେଁ
ଆପଣାର ? ମୁଁ ତେବେ କାହାର
ମୁଁ ନିଜର । ଏକାଂତ ନିଜର ।
ଏକାଂତ ମୁଁ ସମୟର ।
ସମୟକୁ ଭାଂଗେ, ଗଢ଼େ ।
ଭାଂଗେ ଏବଂ ଗଢ଼େ ବାରଂବାର
ମୋ ମର୍ଜିର ଫ୍ରେମ୍
ସମୟକୁ ଚଖେ ଏବଂ ଗଢ଼େ ।।
ପୁଣି କେବେ ସମୟର
ବଜ୍ରମୁଠା ମୋ ମର୍ଜିର ଫ୍ରେମ୍ ଭାଂଗେ
ମୋତେ କରେ ଜରଗତ,
ଦାସ, ଅନୁଚର ? ମୁଁ ତ ନୁହେଁ ସମୟର ।
ସମୟର, ନିଜର ଓ ମୁଁ କାହାରି ନୁହେଁ ।।

କେ କାହାର ? ମୁଁ ତ ନୁହେଁ
ଆପଣାର ! ଆଉ କ'ଣ ସମୟର କ୍ରୀତଦାସ

ମୁଁ ଏକାଂତ ଭଲପାଏ ଆପଣାର
ନୂତନ ପୃଥ୍ୱୀକୁ । ଆପଣାର
ପ୍ରବୃତ୍ତି ଓ ସ୍ୱଜନର ରମ୍ୟ କୋଣାର୍କକୁ,
ମୁଁ ଭଲପାଏ ଭଂଗା ଖେଳନାକୁ ।
ଭଲପାଏ ଦୁଃସ୍ଥ ମଣିଷକୁ । ଭଲପାଏ
ବଂଚିବାର ନୂଆ ନୂଆ ଭୃଷ୍ଣାର ଖଂଡିତ ଇଚ୍ଛାକୁ ।।

କେ କାହାର ? କେହି ନୁହେଁ
ଏକାଂତ ନିଜର । ଆପଣା ବି ପର, ହୁଏ

ପରହୁଏ ଅତି ଅପଣାର ।
କ୍ଷେତ ବି ଜଂଗଲ ହୁଏ ।
ଜଂଗଲ ବି ଛୁଏଁ ଆକାଶକୁ
ଆକାଶ ବି ଶୂନ୍ୟ ହୁଏ—
ନିର୍ବିକାର ନିର୍ଗୁଣ ବ୍ରହ୍ମକୁ
ଆଲିଂଗିତ ମୁହୂର୍ତ୍ତରେ କାଂଦେ କିଏ ? ହସେ କିଏ ?
କାଂଦେ ଏବଂ ହସେ ?

କେ କାହାର ? ମୁଁ ତ ନିଜେ
ନିଃଶବ୍ଦ ଶବ୍ଦର ଝଡ଼; ଅଂଧାରର ତାଡ଼ି ।
ମୁଁ ଏକ ଦୁରଂତ ଇଛା,
ବ୍ୟଥାତୁର ମଣିଷର ଦୁଃଖର ପାହାଂଡି ।।



# ମୁଁ

(୧)

ମୁଁ ? ଅଂଧ ସମୟର
ନିର୍ଭୁଲ ପ୍ରଳାପ !
ଏବଂ ପ୍ରଗଲ୍‌ଭ ସଙ୍କାଳର
ଅବ୍ୟକ୍ତ ଧ୍ୱନି,
ସମାଧି ।।

(୨)

ମୁଁ । ଏକ ବ୍ୟବଚ୍ଛେଦ୍ୟ
ମୁହୂର୍ତ୍ତ, ଓ ଦୂରତ୍ୱର ସତ୍ୟରେ
ବିବର୍ତ୍ତିତ ବରବରର
ଆକର୍ଷଣ :

(୩)

ମୁଁ : ନଗ୍ନ ଚୈତନ୍ୟ ଓ
ମନ୍ୱଂତରର ଶିଳାଲେଖ :
ଏବଂ ମମତ୍ୱର ବେଂଗଳାରେ
ଲୁଣ୍ଠିତ ପୃଥ୍ୱୀର ବିହ୍ୱଳତା !

( ୪ )

ମୁଁ : ଏକ ବୃତ୍ତ ।
ଏବଂ ତାର କେଂଦ୍ର
ଊର୍ଦ୍ଧ୍ୱ ପ୍ରାଣ;
ପରିଧି ?
ଜନ୍ମ — ଜରା — ବ୍ୟାଧି ।।

( ୫ )

ମୁଁ : ଏକ କ୍ରୋଧାଂଧ
ଆକାଶ ଓ କରୁଣାର
ବିମୂର୍ତ୍ତ ନଦୀ ।
ପ୍ରାର୍ଥିତ ସଂଜ ଓ
ଅନୁଚ୍ଚାରିତ ଶ୍ଳୋକ ।।



"ସାହିତ୍ୟ"–୧୯୭୪, (୩ୟ ସଂଖ୍ୟା)
କଳିଂଗ ସାହିତ୍ୟ ସମାଜ ମୁଖପତ୍ର

# ଅବିବେକୀ

(ପାର୍ବତୀ, ଦରବାର ଓ ବିବେକୀର ପ୍ରଷ୍ଠାଂକୁ)

ସମୟଠୁଁ ନିଷ୍ଠୁର କାଂଦୁରୀ ମଣିଷ
ପତ୍ର ପାଲିସ୍ କରିବା
ଏକ ବଡ଼ ଦୁର୍ଘଟଣା !

ସମୟର ରେଲିଂ ଧରି
ସମୁଦ୍ରକୁ ମୁହାଁଇବା
କଉଣସି ମରମୀ ଲୋକର
କାମ ନୁହେଁ ଜମା
ଓ ସମୟର ଦାଂତୁରୀ ମୁହଁକୁ
ପଚ୍ଚ ଅଂଡା ଫିଂଗିବାଟା
ନୁହେଁ ଏକ
ବାମପଂଥୀ କାର୍ଯ୍ୟରେ ଗଣନା !

ହେ ସମୟ, ତୁମଠୁଁ ନିର୍ବୋଧ
ଏବଂ ବୋକା ଲୋକଟିଏ
ବିଗ୍ଧରକ ହେଲା ପରେ :
ପାଟଛଡି ଆକାଶର ମଥାନ ଛୁଇଁଲା !

ଏକ ଦୁଃଖୀ, ବ୍ୟଥିତ ହୃଦୟକୁ ଛେଚି,
କୁଟି ଛିନ୍ ଛତ୍ର କରି
ଦରିଆର ଗର୍ଭେ ଉଝେଇଲା ।।

(ହେ ସମୟ, ତୁମରି ଛ ତିରେ
ଚଳାଇଲ ଛୁରି । ତୁମରି ଆଖିରୁ
ପୋଷ ପୋଷ ରକତଝେ ଢାଳି । ଏବଂ
ତୁମରି ଚଳଂତା ଚୌଡି-ମୁଁଡିର ମୁହଁରେ
ମୁଠା ମୁଠା କଳଂକର କାଳି
ବୋଳିଲ ଉତ୍ତାରେ,
ତୁମେ କ'ଣ କହୁଥାଂତ—
ସାବାସ୍ ସାବାସ୍ ।। )

ତୁମରି ଦୁର୍ନାମ ଅଛି ବଢ଼ିଲା ଝିଅକୁ
ବଢ଼ିଲା ଗଛ ଏବଂ ଚଳଂତା ଗାଡ଼ିକୁ
କିଂବା ଲକ୍ଷପତି
କଳିଭାର ଖୁନୀ ଆସାମୀଂକୁ,
ଅଥବା ଟୁଲିଖୋର
ଜୁଆଡ଼ି ଓ ମଦତିମାନଙ୍କୁ
ଅକ୍ଲେଶରେ ଠେଲିପେଲି ଉର୍ତ୍ତିକର
ତୁମ ଚକ-ଅଖର ମୁଣାରେ ଓ
ଡେହିଯାବୀ, ବେପରୁଆ ।
ରୋଗିଣା ଲୋକଂକୁ
ମାରିପିଟି ଶାସିବାର ଦୁର୍ନାମ ବି ଅଛି ।।

ତୁମେ ଆଜି ମୋଡ଼ ବଦଳାଇ
ଖ୍ବଚମିଛ, ରଂଗଢଂଗ
ଶ୍ଲୀଳର ସନ୍ତାରୁ
ଓହ୍ଲ ଇଚ ଅଭବୀର ବୋହୂପରି
ମଳିଧୂଳି ଅସନା ରାସ୍ତାକୁ ।
ନର୍ଦ୍ଦମାର ପଚ ପାଣି,
ପଚ ଗଂଧ ଛାଣି
ଡିଆରୁଚ ଅଜରର
ତରଳ ସ୍ପଂଦିନୀ ।

ଚିଅରୁଚ ଭାଈଁବାର
ବେଜ ବିଂନ୍ଦୁ ଲୁହରେ ଯତନେ ଗନ୍ଧା
ପାଟଛତି, ସୁନାଜରି
ମରମୀର ତୁଳୀ ।

ବିଂଧାଣିର ପଛେ ପଛେ
ତୁମେ ଥିଲ ତାଳପତ୍ର ଛତା
ଏବଂ କମଂଡଳୁ ଧରି ।।



# ମରଣ ଜାତକ

ଆମେ ସବୁ କେମିତି ବଂଚିବା ?
ଏ ପ୍ରଶ୍ନର ଦ୍ୱଂଦ୍ୱେ ଚାଲ ବଂଚିବାର ପାଥେୟ ଖୋଜିବା ।

ହୁଏତ ଏ ସମୟର ତେଜ ଗତି, ତିମୁହାଣି ଛକୁ
ବାଲିରେ ଘୋଷାରି ପାଦ ମୁଠା ମୁଠା ଯଂତ୍ରଣା ଫୋପାଡ଼ି
ଶୀତର କାକରେ ଭିଜି ମିଠା ମିଠା ଅଂଧାର ଚାଖିବା
ଆମେ ସବୁ ଯିବା ଝାଉଁ ଏ ଘଡ଼ିର ଉପକୂଳେ
ତଂଦ୍ରାରେ ଆଖିକୁ ଧୋଇ ବଂଚିବାର କିନାର ଖୋଜିବା
ଆମେ ସବୁ କେମିତି ବଂଚିବା ?

ଏ ପ୍ରଶ୍ନର ଦ୍ୱଂଦ୍ୱେ ଚାଲ ଅଂଧାରର ତରଂଗ ଆଡ଼େଇ
ମନର ନିବୁଜ ଘରେ ନୀରବେ କାଂଦିବା
ଏବଂ ପୁଣି ଲୁହ ପୋଛି ଝିକିମିକି ଆଲୁଅ ଜଳାଇ
ସୋଲି ବିଡ଼ି ଟାଣି ଟାଣି ଦମକାଏ ନିଶ୍ୱାସ ମରିବା
ଦୁଃଖର ମସିଣା ପରେ (ଯଦିହୁଏ) କିଛିକ୍ଷଣ ଦେହକୁ ଲେଟାଇ
ଶ୍ରୀମତୀଂକୁ ପାଖେ ଡାକି କାଶିଚାଏ ସାଂତ୍ୱନା ମାଗିବା,
କିବା ପୁଣି ସଚେତନେ ଆଖିବୁଜି ଅମର ଡମରୁ
କେଇପଦ ଶୁଣି ଶୁଣି ଘଡ଼ିଟାରେ ବାହାରକୁ ଯିବା,
ଆଖିରେ ଆଲୁଅ ଜାଳି ଅଂଧାରରେ ବଂଚିବାର ପାଥେୟ ଖୋଜିବା !

ବଂଚିବାର ପଥ କାହିଁ ? ଚାରିଆଡ଼େ ପଥରୁଦ୍ଧ । ଚେତନା ପ୍ରହରୀ
ଏପଟ ସେପଟ ହୁଏ । ବ୍ୟସ୍ତତାରେ ହତବାକ୍ ବିମୂଢ଼ ନିଶ୍ଚିଳ ।
ଶୁଭୁଚି ଅଦୂରୁ କା'ର ପ୍ରାର୍ଥନାର ସ୍ୱର ।
ହୁଏତ-କେ ଆଧୁନିକା ଅନେକ୍ଟ ଅନିଚ୍ଛା ସତ୍ତ୍ୱେ
ବାହାରକୁ କାଢ଼ିଅଛି ଛଗାଡ଼ ।

ଏହିତ ସେ ବରଗଛ ଭୂତର ସମାନ
ଆଗରେ ହେଉଛି ଠିଆ, ସହରକୁ ଅଂଧାର ବେଢ଼ିଛି
ରସ୍ତାର ମଝିରେ ଦେଖ ପୁଂଜିବାଦୀ ଗାଈଟା ଯେ
ଅଂଧାରରେ ବାଛୁରୀକୁ ସେନେହେ ଚଟୁଛି ।

ବଂଚିବାର ପଥ କାହିଁ ନର୍ଦ୍ଦମାରେ ଶିଶୁର କାଂଦଣା
ପବନର ଢେଉ ଭାଂଗି ଶୁଣାଉଛି-ମୁକ୍ତିର ଗଂଜଣା ।
ଅଂଧାରେ ବସିଛି ହାଟ ପରସ୍ପର ଚିହ୍ନାଚିହ୍ନି ହୋଇ
ଦ୍ରବର ଆଲୁଏ ଘୁଲେ ଦିଆ ନିଆ ମୁକ୍ତ କାରବାର,
କେଡ଼ିକି ଉତ୍ସୁତା ଅଣେ ନିଷ୍ପ୍ରଦୀପ ରତିର ଅଂଧାର
ଆମେ ସବୁ କିପରି ବଂଚିବା ?

ଅଂଧାରର ପିଠି ଥାପୁଡ଼ାଇ ଛଳନାର ମମତା ମାଗିବା !
ଘୁରିଆଡ଼ ଅଂଧକାର —ଝାଉଁବଣ ଗାଉଅଛି ଗୀତ
ଜୀବନ ଅତିଷ୍ଠ ଏଠି । ଅଂଧାରେ ବି ନିଜକୁ ହଜାଇ
ମୁହୂର୍ତ୍ତର ପଦାଟେକି କ୍ଲାଂତହୁଏ ଚିଂଗୁଡ଼ିର ବଶ ।

ଆମେ ସବୁ ଯିବା ଆସ । ଦୟନୀୟ ଜୀବନ ଗଳାରେ
ବଂଚିବାର ଚେଷ୍ଟା ଦାନ୍ତ ଆଜି ପରଖିବା
ଆମେ ସବୁ କେମିତି ବଂଚିବା ?

ସମସ୍ୟାର ମୋଡ ଭାଂଗି ରକ୍ତ କିଛି ମନରୁ ନିଗାଡ଼ି
ଘରମିନାର ଟାଣି ଟାଣି ଅଂଧାରରେ ମୁହଁ ଚିହ୍ନି ଚିହ୍ନି
ଅଚିହ୍ନା ଲୋକର ଭିଡେ ଚୋରପରି ସଂଦେହୀ ମନରେ
ଅଂଧାର ଲହଡ଼ି ଭାଂଗି ଆମେ ସବୁ ମରଣକୁ ତଲ୍ଲାସ କରିବା
ଏବଂ ତାର ହାନି ଲାଭ କ୍ଷୟ କ୍ଷତି ଖବର ରଖିବା ।
ଆମେ ସବୁ କେମିତି ବଂଚିବା ?

ଜାଲିଆଡ଼ି ପ୍ରାଣ କାଟି ଜନତାର ଦରିଆରେ
କେମିତି ବା ଆନଂଦର ସୁଏ ସଂଚରିବା—
ନିରୀହ ମାଛଟି ପରି ଠକାମିର ପନିର୍ଖିରେ
ଆମେ ସବୁ ଯିବା ଆସ ଜୀବନକୁ ଔରେ ସମର୍ପିବା ।
ଆମେ ସବୁ କେମିତି ବଂଚିବା ?

ସ୍ୱସ୍ତିର ଅସ୍ୱସ୍ତି କୀଟେ କଳ୍ପନାର ସଂକଟ ଛାଇରେ
ସ୍ଥିତିର ଅସ୍ଥିତି ହିଡ଼େ ଜୀବନକୁ ଠିଆ କରଇବ
ମନଭୁଲା କଥା କିଣି ପାଣିଚିଆ ସପନର ମନକୁ ହକାଳି
ଅତୁଟ ଆଶାର ନିଶା ବିଶୋରିବ କ୍ଲୀବତ୍ୱ ଯୁବକର ଦାଗ
ଅଂତତଃ ରଖିବା ମନେ ଅଂଧାରରେ ପୁରୁଷତ୍ୱ ଭୁଲି—
( ଯଦିଓ ଏ ଅଂଧାରରେ ପୁରୁଷତ୍ୱ ସାତକାଟଇ ବେଶି ! )
କାରଣ ବଂଚିବା କଷ୍ଟ, ଛିନ୍ନଛନ୍ନ ପ୍ରତ୍ୟାଶାର ଧୂଆଁ
ଜୀବନର ଶୂନ୍ୟତାରେ ଅଂଧାରର ଢେଉ ଖାଲି ଢେଉ ।
ଆମେ ସବୁ କେମିତି ବଂଚିବା ?

ବଂଚିବାର ଫଳକରେ ଆମେ ସବୁ ଯିବା ଆସ
ଜୀଅଂତା ଶବର ଲୁହେ ସରମର କବିତା ଲେଖିବା;
ଏବଂ କିଛି ପ୍ରତିଶ୍ରୁତି ପ୍ରତିଦାନ ତାଗିଦ୍ କରିବା—
ଅଂଧାରର କଳାବୌଲି ଦେହୁ ଆମ ସଂସ୍କୃତିର ଲୁଗା ପାଲଟିବା ।
ଆମେ ସବୁ କେମିତି ବଂଚିବା ?
ହ୍ରସର ପ୍ରାଚୁର୍ଯ୍ୟ ନଈକୂଳେ ଆସ ମରଣର ଜାତକ ଖୋଜିବା ।



# ଆଦିବାସୀ ପଲ୍ଲୀରେ ସକାଳ

ଦିଗଂତର ସିଢ଼ି ଧରି ଅଂଧକାର ପରିକ୍ରମା କରେ
ନିଘଂଚ ଅରଣ୍ୟ ସୁଏ କୁହୁଡ଼ିର ମଲାଟ ଭିତରେ ।

ନିଘଂଚ ଅରଣ୍ୟ ସୁଏ, ଏ ଘଡ଼ିରେ ପହଡ଼ ଭାଂଗିନି
ସୂର୍ଯ୍ୟର ନରମ ହାତ ସ୍ପର୍ଶ କିବା ତା'ଦେହେ ଲାଗିନି ।

ସକାଳ ହେଲାଣି ଉଠ । ଆଦିବାସୀ ରମଣୀର ଡାକ !
ହାଂଡ଼ିଆର ନିଶା ତାର କଂଠେ ଭରେ ବେପଥୁ ଅନେକ ।
ସକାଳ ହେଲାଣି ଉଠ ! ରାତିଟାର ନିରଂଧ୍ର ଅଂଧାର
ଶେଯରେ ଅନେକ ସ୍ୱପ୍ନ, ବାର୍ତ୍ତା ଆଉ ଘୁଷୁରି ଚର୍ବିର;
ସ୍ନିଗଧତା ମନର ତଳେ । ସତେ କିବା ଏ ସକାଳ ହେଲାଣି ?
ନିର୍ବୋଧ ଜୀବନ କ୍ଲାଂତ । ପୁରୁଷତ୍ୱ ଝୁରି ମରିଲାଣି ।
ସକାଳ ହେଲାଣି ଉଠ; ସୂର୍ଯ୍ୟ ଢାଳେ ଚେତନାର ନିଆଁ
ନିର୍ବିକାର ମନ ଆମ ଦୁଃଖ ଆଉ ସଂକଟର ଛକେ
ଅବସନ୍ନ ହେବ ତେଣୁ କିଆଁ ?

ସକାଳ ହେଲାଣି କୁହ ! କାହିଁକି ଯେ ବ୍ୟସ୍ତ ଓ ଚଂଚଳ
ସୂର୍ଯ୍ୟ ଉଏଁ, ସୂର୍ଯ୍ୟ ବୁଡ଼େ, ନୀରବ ଓ ଗଂଭୀର ଅନେକ
ଯେମିତି ସେ ବୃଦ୍ଧପାପୀ ପିଇ ସବୁ ନର୍ଦ୍ଦମାର ଜଳ;
ବ୍ୟସ୍ତମ୍ଲାନ ବୀଜ ବୁଣି, ସ୍ତବ୍ଧ ଏକ ଚେତନାକୁ ଢାଳି
ସକାଳ ଆସିଛି ଆଜି କାଂଧେ ବୋହି କର୍ମର କୋଦାଳ ।
ସକାଳ ଆସିଛି ଆସୁ ପ୍ରଗତିର ବୋଝ ବୋହି ଚୋହି
ଅନେକ ସଡ଼କ ବାଂଧି, ନୂଆ ନୂଆ ଜ୍ଞାନ ଆଉ
ଅଭିଜ୍ଞାନ ପଥର ବିଛେଇ ।

ସକାଳ ଆସିଛି ଆସୁ ତ୍ରସ୍ତ ଆଉ ଅବିଶ୍ୱାସ ନିର୍ମମ ଜୀବନେ ।
ନିଘଂଚ ଅରଣ୍ୟେ ଆସୁ ଏ ସକାଳ—ବ୍ୟାଘ୍ର ଆଉ ହରିଣୀର ଦଳ
ଚିକ୍ ଚିକ୍ ସାପ ଦେହ, ମୁଠା ମୁଠା ମହୁଲ ଫୁଲର
ରାତ୍ରିର କ୍ଲାଂତିକୁ ପୋଛି ଓ ଜଳାଇ ମନର ଜଂଗଲ ।
ହାୟ ! ତୁମେ ଭୁଲ କଲ !—ବାରଂବାର ଦେଉଛ ଚେତାଇ

ସକାଳ ଆସୁଛି ଯେଣୁ, ଆମେ ଯିବା ଆଲୋକର ସିଡ଼ି ବାହି ବାହି,
ସଂଶୟର ସମୁଦ୍ରରେ ନିଜକୁ ଅନେକ ଦୁଃଖେ ଦେବାକୁ ହଜାଇ
ନୋଳିଆର ଜାଲେ କେବେ, ପୁଣି କେବେ କାତମାରି, ମଙ୍ଗ ବାହି ବାହି ।
ସକାଳ ହେଲଣି ହେଉ, ସୂର୍ଯ୍ୟ ଛୁଇଁ ଡେଂଗା ଗଛ ସୁଂଆର ପତର
ଆମେ ଯେ ଅନେକ ତଳେ, ହୃଦୟର ଚିକ୍କଣ ପଥର ।



# କ୍ରମଶଃ ବର୍ଷା, ବିବିକ୍ତ ମନ ଓ ଈଶ୍ୱର

କେଉଁଆଡ଼େ ଯିବା କହ ଚବ ଚବ ପାଣି କାଦୁଅରେ ?
କ୍ରମଶଃ ନିସ୍ତୁକ ବର୍ଷା । ବର୍ଷା । ବର୍ଷା । ବର୍ଷା ! ଆଉ ତା ପରେ—

ଏହିଠାରେ ଚୁପ୍ ହୋଇ ବସିବାରେ କ୍ଷତି କ'ଣ ?
ଅନ୍ତତଃ ନିଜକୁ ନିଜେ ପ୍ରବୋଧିବା ନିଃସଂଗତା ଶେଯରେ ଶୁଆଇ
ଅନ୍ତତଃ ନିଜକୁ ନିଜେ ଆଶ୍ୱାସିବା ଚିଂତାକୁ ଲେଟାଇ
ଆପଣାର ସଂଚିତ ପୁଣ୍ୟରେ । ଏଣୁ ବସି ଏଇଠାରେ
ଝର୍‌ମିନାର ଟାଣିବାରେ ସୁଖ ଅଛି । ଅଛି କିଛି ଅସ୍ୱସ୍ତିର ବୋଝ
ଅଛି କିଛି ଶୂନ୍ୟତାର ଶଂକାହୀନ ନିସ୍ତଳ ଆଓ୍ୱାଜ !
ଯାହା ଥାଉ । ଉଦାସିଆ ପାଗ ଏବଂ ବର୍ଷାର ଗୀତରେ
ଆଜି ବେଶି ମନେ ପଡ଼େ ବିଧବାର ନଂଗଳା ହାତ ଓ
ଅଧା ଜଳା ଚୁଲୀ ପାଖେ ମଥା ଗୁଂଜି ବସିଥିବା ବିବାହିତା ନାରୀ,
ସ୍ନେହର ଛିଟାରେ ଭିଜା ତା ମାତୃତ୍ୱର ଗର୍ବର ଉତ୍ତରୀ !
ଆଉ ବି ଏ ବର୍ଷାଟାର ତୁଆ ତୁଆ ଅମାନିଆ ନାଚ
ମୋ ଆଗରେ ତୋଳି ଧରେ ଅଧାପେଟା ଶିଶୁର କରୁଣ ଆଖି
ଓ ଟପ୍ ଟପ୍ ଗଳୁଥିବା ବର୍ଷା ପାଣି ଝଳରୁ କାହାର !

ଏଇ କିଏ କୁଂଥାଉଛି ? ଟାଇଫଏଡ୍, ଇନ୍‌ଫ୍ଲୁଏନ୍‌ଜା, ଫ୍ଲୁ ବୋଧହୁଏ
ଏଇ କିଏ ଡାର୍ଟିଙ୍ଗିଗୀ ଝ୍ୱ' ମାଗେ ନାତୁଣୀକୁ ତାର ?
କାଶିଝୁଏ ହସ ଉଡ଼ା କେଇ ଖଂଡ ହାଡ଼ ଏବଂ ଫିକା ଫିକା
ରକ୍ତର ଜୀବନ ।

ବର୍ଷା । ବର୍ଷା । ବର୍ଷା । ଯାହା ଆମ ଜୀବନକୁ ଫୁଲାଇ ଫଳାଇ
ସୁନ୍ଦର କରିବା କଥା ଲୋକସିଦ୍ଧ । ପରିହାସ, ଲୋକନିଂଦା ପରେ

ବସଂତ ଟାହୁଲି କରେ ଟକମକ ଫୁଟୁଥିବା ରକ୍ତର ଫଗୁଣେ ।
ବର୍ଷା ବି ଢଳାଏ ନିଆଁ କୁଟୁଂବୀ ଓ ଅଖ୍ୱବୀର ସାଈତା ଦୁଃଖରେ ।

ଏଠାରେ ଚୁପ୍ ହୋଇ ବସିବାରେ ଲାଭଠାରୁ କ୍ଷତି ଗୋ ଅନେକ ।
କାରଣ ନିଜକୁ ନଜେ ବିଶ୍ଳେଷିବା ଓ କିଛି ଭାବିବା ବ୍ୟତୀତ
ଆଉ କଣ କରାଯାଇ ପାରେ ? ଆଉ ବା ଅଧିକ ହେଲେ
ଆପଣାର ବଂଧନରୁ ମୁକ୍ତ ହୋଇ ଶୂନ୍ୟତାକୁ ପ୍ରଦକ୍ଷିଣ କରାଯାଇ
ପାରେନା!

ଏ ସବୁ ମନକୁ ଆସେ : ଚିଂତାହୀନ, ଦୁଃଖହୀନ ଓ ଦାୟିତ୍ୱହୀନର
କଳ୍ପନା ବ୍ୟତୀତ ଆଉ କିଛି ନୁହେଁ । ଏ ସବୁ ନିଶ୍ଚିଂତ ମନର
ଲୋକଦେଖା ପ୍ରୀତି ଛଡ଼ା ଆପଣାର ଫୁଲାଣିଆ ଇଚ୍ଛା ହୋଇପାରେ
କାରଣ ଏ ବର୍ଷା ଦେଖ କଫି ପିଏ ସୋଫାରେ ଢୁଳାଇ,
ସଂଧ୍ୟାରେ ଯାଉଚି ପୁଣି କକ୍‌ଟେଲ ପାର୍ଟି ଆଉ କ୍ଲବ୍ ଘରାରେ
ଓ କେବେ କେବେ ନିର୍ଧୂମ ପିଉଚି ଧୂଆଁ କେଉଁ ଏକ ତରୁଣୀର
ଖୋଲା ଦେହ, ମନ ଆଉ ସପନର ଘରେ ।। ଓ କେଇମୁଠା ଉତ୍ତାପରେ

ଭିଜି ଭିଜି ଗୀତ ଗାଏ ରକ୍ତ ଓ ମାଂସର,
ଏ ବର୍ଷା ନାଚୁଛି ଆଜି କାଂଧେ ବହି ବିଳାସିନୀ, କାମକଳା ଭାର !
ଯଦିଚ ଏ ବର୍ଷା ଆଣେ ହଜିଥିବା ଅତୀତର ଗୋପନ ସଂତାପ । ଓ
ମିଛେ ମିଛେ ଲୋଟାଏ ମୋ ଚେତନାକୁ ଗାଁର ପଂକରେ ।
ମୋତେ ବି ସତରେ ଲାଂଛେ ଅନ୍ୟ ପାଇଁ ନିଜ ଅଜ୍ଞାତରେ ।।

ମୁଁ ନିର୍ବୋଧ ଝୁରି ହୁଏ ଅନ୍ୟ ପାଇଁ କାହିଁକି କହତ ?
ଏ ନିଷ୍ଫଳ ଝୁରିବାର ଅର୍ଥ କ'ଣ ଏ ମିଛ କବିତା ?
ଏ ମିଛ କବିତା କ'ଣ ମୂଲ୍ୟହୀନ ମନର ମମତା ?
ଏ ମନ-ମମତା କଣ ପାଣିଚିଆ ସ୍ନେହର ଦରଦ ?
ଯାହାକୁ ମୁଁ ଫାଂକି ପାରେ ଘରମିନାର ଧୂଆଁର ଗଂଧରେ ।।

ମୁଁ ବସିଲି ଚୁପ ହୋଇ । ବଂଚିବାର ରହସ୍ୟର ସ୍ମୃତି
ଝୁଂକି ଦେଇ ବାରଂବାର ଚେତାଇଛି ମୋତେ :
ନିଜେ ଯଦି ଭଲ ଅଛ ତେବେ ସବୁ ଠିକ୍ ଅଛି ।

(ହ୍ବାଉନିଂ କହିଥିଲେ—ଏ ପୃଥିବୀ ଭଲ ଅଛି : ଭଗବାନ
ଅଛଂତି ଉପରେ
ଏହା ଏକ ଆପେକ୍ଷିକ ସତ୍ୟ ଏବଂ କବିଂକର ସ୍ୱତଂତ୍ର କଳ୍ପନା)
କାରଣ ନିଜେ ମରୁ ମରୁ ଅନ୍ୟ ପାଇଁ ଲୁହ ଢାଳିବାର
ଦୃଷ୍ଟାଂତ ଯଦିଚ ଅଛି : ସେମାନେ ତ ସୃଷ୍ଟିଛଡ଼ା, ନଂଗେଳା ଓ
ଅଦ୍ଭୁତ ମଣିଷ;
ମଣିଷ ତ ସ୍ୱାର୍ଥପର । ଦେହଜ କାମନା ଆଉ ଅସୁମାରୀ
କ୍ଷୁଧାର ନରକ ।

ଆଉ ବି ସେ ଜଳୁଥିବା ନିଆଁର ଖୋଳରେ ଫକ୍ ଫକ୍
ଡେଉଁଥିବା ପୋକ ।।

ଏଣୁ : ରକ୍ତର ମଣିଷ ହେଇ ଅନ୍ୟର ଦୁଃଖକୁ
ଆପଣା ରକ୍ତରେ ଫେଂଟି ଆପଣାକୁ ହସାଇବା ଲୋକନୀତି,
ପ୍ରଚଳିତ ପ୍ରଥା
ଯାଠାରୁ ଅଧିକ କିଛି ହେଲେ ମୁଁ ତ ଆପଣାକୁ ମଣୁଥାଂତି
ସାକ୍ଷାତ ଦେବତା ?

ମୁଁ ଯେମିତି ପ୍ରତିଦିନ ମୋ ରୁଟିନ୍ ସମାପ୍ତ କରୁଚି
ସେମିତି ହୁଏତ ପ୍ରଭୁ ତାଂକ ନିତ୍ୟକର୍ମ କରୁଥିବେ !
ହୁଏତ ମୋ ଭଳି ବସି କେତେବେଳେ କଫି ପିଉଥିବେ ।
କିଂବା ପୁଣି କେତେବେଳେ ମାର୍କସ୍ ଏବଂ ଏନ୍‌ଜେଲ୍‌ସଂକୁ ପଢି
ନୂଆ ନୂଆ ଚିଂତାରେ ବି ମଗ୍ନଥିବେ । ଓ ମାଓଂକ ନୀତିରେ
ଅସଂଭବ ଭାବେ ପ୍ରଭୁ ଚିଡ଼ି ଉଠୁଥିବେ । ଠିକ୍ ମୋ ଭଳି ଏବଂ
ଅବାଂଛିତ ବହୁ ଦୁଃଖୀ ଭିକାରି ଓ ଅଭାବୀଂକ ପରି
କିଂବା ଅନ୍ୟ ପାଇଁ ଝୁରୁଥିବା ସୃଷ୍ଟିଛଡ଼ା ମଣିଷଂକ ପରି
ଭଗବାନ ବର୍ଷାଟାରେ ଏ ଜନ୍ମର ଓ୍ୱାର୍ଡ୍ର କରୁଥିବେ ।
(କାରଣ ଭଗବାନ ଭାଗ୍ୟବାଦୀ, ଧର୍ମଭୀରୁ ଓ
ଅଳ୍ପକେ କାନ୍ଦଣ୍ଡିମାଇଚିଆ ପୁରୁଷଂକ ପରି)

ଚୁପ ହେଇ ବସିବାଟା ନିର୍ବାସନ ନୁହେଁ ଆଉ କ'ଣ ?
ତଥାପି ନିଜକୁ ନିଜେ କହିବାର ଅଧିକାର ହେତୁ
ଏତେଗୁଡ଼ା କହିଗଲି କାହାକୁ ? କାହାକୁ ?

ନିଜକୁ ବଂଚାଇ ପ୍ରଭୁ ତୁମେ ରଖ ଦୁଃଖୀ, ରଂକୀ ପଛରେ ଯାହାକୁ !
ତୁମେ ଏତେ ବେପରୁଆ ! ଠିକ୍ ମୋ ପରି ?
ସାମାନ୍ୟ ଅଂଡାକୁ ଡରି ବର୍ଷାଟାରେ ବାହାରକୁ କାଢ଼ୁନାହିଁ ଗୋଡ଼
ମୁଁ ତେବେ ଅନୁରୋଧ କରିବି କି ଭଗବାନ୍ ଆଜିର ବର୍ଷାରେ ?
କଦଳୀ ଭେଳାରେ ଯିବା ମଫସଲ ଗାଁ ବୁଲି ଆସ ।
ନୌକା ଓ ଷ୍ଟିମର ସବୁ ଦଦରା ଓ ଅକାମୀ ହେଇଛି ।
ତୁମେ ବୋଧହୁଏ ଡରୁଥିବ ତୁମକୁ ମୁଁ ମଝି ଦରିଆରେ
ଛାଡ଼ିଦେଇ କୂଳଟାରେ ନଂଗଳା ପିଲାଂକ ସଂଗେ
ତୁମ ବୁଡ଼ିମରା ଦୃଶ୍ୟ ଦେଖି ବେଶ୍ ଖୁସି ହେଉଥିବି ?

ଅଂତତଃ ତୁମକୁ ମୁଁ କହିରଖେ ଭଗବାନ, ତୁମେ ଯଦି ମର
ମୁଁ ମରିବି ଧରି ତୁମ ଅଂଟା, ବେକ ଓ ଗୋଡ଼କୁ ।
ତୁମେ ଯଦି ପହଁରିବା ଉପକ୍ରମ କରିବା ସତ୍ତ୍ୱେ ବି
ପାଣି ପିଇଯାଅ ଏବଂ ଅଳପକେ ରକ୍ଷା ପାଇଯାଅ
ମୁଁ ବି ସେମିତି ହାସ୍ୟ (ଜାଣିଶୁଣି) ଅଭିନୟ କରି
ତୁମରି ଖୁସିରେ ବେଶ୍ ଖୁସିଟାଏ ହେବି ।।

ତେଣୁ ପ୍ରଭୁ ! ବର୍ଷା, ବନ୍ୟା, ମରୁଡ଼ି ଓ ନିର୍ଜଳା ଉପାସ
କିଆଘେରା ଗାଁର ଗୋହିରୀ, ଓଦାମାଟି, ମୂତୁରା ହେଂସ ଓ
ମାର ଓହଳାସ୍ତନେ ମୁହଁ ଗୁଂଜି ଅଧମରା ଶୋଉଥିବା ଶିଶୁ
ଏବଂ ଭଂଗା କାଂଥ, ଛିଡ଼ା କଂଥା, ଖୁଁ ଖୁଁ କାଶୁଥିବା ବୁଢ଼ୀ—
ହାଂଡ଼ି ଓ ମାଠିଆ ସବୁ ଶୂନଶାନ । ଖାଲି ଏକ ଶୂନ୍ୟ ଦୀର୍ଘଶ୍ୱାସ
ଉତ୍ତାପ ସଂଚରି ଯାଏ ତୁମ ଛାତିତଳ ଏକ ନଈ ମୁହାଣରେ
ଯେଉଁଠି ମୁଁ ବସିଅଛି କଦଳୀ ଭେଳାକୁ ଭିଡ଼ି ତୁମ ଅପେକ୍ଷାରେ ।

ହେ ପ୍ରଭୁ, ତୁମେ ଆଜି ଗୋଟା ଗୋଟା ଉପାସରେ ଚୁଲି ଫୁଂକୁଥିବ,
ତୁମେ ବୋଧହୁଏ ରାଗଟାରେ ହାଂଡ଼ି କୁଂଡ଼ି ସବୁ ଛେଚୁଥିବ ଓ
ବର୍ଷାଟାରେ ଆପଣାକୁ ଆପେ ଆପେ ଶୋଧିବା ବ୍ୟତୀତ
ଜନ୍ମଠୁ ମୃତ୍ୟୁକୁ ଏକ ସିଡ଼ି ବାଂଧୁଥିବ । ଯାହାକର ।
ମୁଁ ବି ଏମିତି—ଗୁଡ଼ଉଳ କେତେଟା ଭିଜି ରଖୁଛି ଖୁସିରେ
ତୁମ କଥା, ବର୍ଷା କଥା, ପିଲାଛୁଆ କଥା ଭୁଲି ପୋଖରୀ ମଝିରେ
ଦେଖୁଛି ଫୁଟିଛି ଏକ ପଦୁଅଁ ଓ ମୁଁ ତୋଳିବା ଆଶାରେ
ପାଣିକୁ ଡେଇଁବା ପରେ ଫୁଲ ତାର ଘୁଂଚି ଘୁଂଚି ଗଲା

ଆଜିର ଏ ନିଃସଂଗତା ମୋ ପ୍ରାଣର ଶ୍ରାବଣକୁ ଋତୁମତୀ କଲା ।
ତେଣୁ ପ୍ରଭୁ, ମୁଁ ନିର୍ଦ୍ଦୋଷ । କ୍ଷମାଦିଅ ଆପଣା ଦୋଷରୁ
ଆପଣାକୁ ମାରିପିଟି ଶାସିବାର ଯେତେକ ପ୍ରୟାସ
ଆଜିଠୁଁ ତୁମରି ହାତେ ସମର୍ପଣ କଲି ॥

ବର୍ଷା । ବର୍ଷା । ବର୍ଷା ଓ ତା ପରେ
ଜୀବନକୁ ସଅଁପିବା (କରୁଣାରେ ଭିଜି ଭିଜି) କାହାର ହାତରେ ?



# ସ୍ରଷ୍ଟା, ସୃଷ୍ଟି : ମତ
# ଅଭିମତ, ଭିନ୍ନ ମତ
# ଓ
# କ୍ରିୟା-ପ୍ରତିକ୍ରିୟା :



## କାବିଝିର ମୁହଁ (୧୯୭୪)

ଆଧୁନିକ କାବ୍ୟ ଚେତନାର ସୁଷ୍ଠୁ ଓ ପୁଷ୍କଳ ଅଭିବ୍ୟକ୍ତି ଏ ସଂକଳନର କବିତାଗୁଡ଼ିକରେ ସ୍ୱଚ୍ଛ ଓ ସ୍ପଷ୍ଟ ଭାବରେ ପରିଲକ୍ଷିତ । କବି-ବ୍ୟକ୍ତିତ୍ୱ ଓ ପ୍ରତିଭାର ବୈଶିଷ୍ଟ୍ୟ ବିକାଶର ସ୍ୱାକ୍ଷର ମଧ୍ୟ ଏଗୁଡ଼ିକରେ ଅଙ୍କିତ । ତୁମର ସବୁ ସଂକଳନ ମଧ୍ୟରେ ଏହାର ସ୍ଥାନ ସ୍ୱତଂତ୍ର ମର୍ଯ୍ୟାଦାର ଅଧିକାରୀ ।

ଚିନ୍ତାମଣି ବେହେରା, ୫ । ୭ । ୭୬, ପୁରୀ

କବିତାଗୁଡ଼ିକରେ କବିଂକର ବ୍ୟକ୍ତିକେଂଦ୍ରିକ ଭାବଚେତନା ରୂପ ଲାଭ କରିଛି । ପାଠକ କବିତାଗୁଡ଼ିକ ଭିତରେ ଜଣେ କବିଂକର ଜୀବନର ସୁଖ ଦୁଃଖ, ଆଶା-ନିରାଶାର ବଳିଷ୍ଠ ପ୍ରକାଶଭଂଗୀ ଓ ଭାବସତ୍ତା ଉପଭୋଗ କରିବାର ସୁଯୋଗ ପାଏ । 'ମୋ ମା' ପ୍ରତି', 'ନିଜସ୍ୱ ପ୍ରାର୍ଥନା', 'ସନ୍ନ୍ୟାସ' ଓ 'ନିରୁଦ୍ଦିଷ୍ଟ ବ୍ୟକ୍ତି ସଂପର୍କରେ' ଆଦି କବିତାଗୁଡ଼ିକ ଏ ଗ୍ରଂଥର ଶ୍ରେଷ୍ଠ କୃତି ବୋଲି କୁହାଯାଇପାରେ ।

× × ×

କବି ଶ୍ରୀ ଲେଂକାଂକ ପ୍ରକାଶଭଂଗୀ ତଥା ସମୃଦ୍ଧ ଶବ୍ଦ ଭଂଡ଼ାର ତାଂକ କବି ପ୍ରତିଭାର ପରିଚୟ ବହନ କରେ । ସ୍ଥାନେ ସ୍ଥାନେ ସାଂଗୀତିକତାର ଅନୁରୋଧରେ କବି ଭାବକେଂଦ୍ରରୁ ଦୂରକୁ ଚାଲି ଯାଇଛଂତି । ଏ ଗ୍ରଂଥ ବିପକ୍ଷରେ କିଛି କହିବାର ଥିଲେ ମଧ୍ୟ ଏବଂ କେତେକ ତ୍ରୁଟି ସତ୍ତ୍ୱେ ଏହି ସଂକଳନ ଯେ ଆଧୁନିକ କବିତାର ଏକ ପ୍ରତିନିଧି ସ୍ଥାନୀୟ ସଂକଳନ ଏହା ଅସ୍ୱୀକାର କରି ହେବ ନାହିଁ ।

'ମୁକ୍ତଶାଳା" — ୧୯୭୬ ବାର୍ଷିକ ସଂଖ୍ୟା ।

● "କବିତାର ମୁହଁ" ମୁଖ୍ୟତଃ ପ୍ରାଣ ଓ ଜୀବନ ଭିତ୍ତିକ କବିତାର ସଂକଳନ । × × ଜୀବନ, ଯଂତ୍ରଣା, ଦ୍ୱଂଦ୍ୱ, ସଂଶୟ ଓ ଆତ୍ମପ୍ରତ୍ୟୟଜନିତ ନିଷ୍ଠାର କାରିଗରୀରେ ଏ ସଂକଳନ ସମୃଦ୍ଧ । ଗୁରୁପ୍ରସାଦ ମହାଂତିଂକ ପରେ ଆଧୁନିକ କବିତାର ଗତିଶୀଳତାରେ ମାର୍ମିକ ସଂବେଦନଶୀଳତା ଓ ଲିରିକାଲ ଏପିଲ୍ ସୃଷ୍ଟି କରିବାରେ କବି ଶ୍ରୀ ଲେଂକା ସିଦ୍ଧହସ୍ତତା ପ୍ରଦର୍ଶନ କରିଛଂତି । ନିର୍ଦ୍ଦିଷ୍ଟ ଭାବ ଓ ଶବ୍ଦ ସଂଯୋଜନାରେ ଶ୍ରୀ ଲେଂକା ନିଶ୍ଚିତଭାବେ ତାଂକ ସମସାମୟିକ କବିମାନଂକଠାରୁ ସ୍ୱତଂତ୍ର ଓ ଏକକ ବୋଲି ପ୍ରତୀତ ହୁଅଂତି । କବିତା ଯଦି ପ୍ରାଣର ଓ ଜୀବନର ବା ତତ୍‌ଜନିତ ଆବେଗ, ଆକାଂକ୍ଷା ବା ଆଶା ନିରାଶାର ମୁଦ୍ରାଂକ ହୁଏ ତେବେ ଏ ସଂକଳନ ଓଡ଼ିଆ କବିତାରେ ଏକ ନିର୍ଦ୍ଦିଷ୍ଟ ସ୍ଥାନ ବାଛି ନେବ, ସଂଦେହ ନାହିଁ ।

—ଧରିତ୍ରୀ

● କବିଂକ ପୂର୍ବବର୍ତ୍ତୀ ଗ୍ରଂଥ 'ସ୍ମରଣ ବିସ୍ମରଣ'କୁ ଯଦି ପ୍ରେମ ଓ ତତ୍‌ଜନିତ ଜୀବନ ସଂପର୍କୀୟ ଏକ ନୂତନ ଆଲେଖ୍ୟ ବୋଲି ଗ୍ରହଣ କରଯାଏ ତେବେ "କବିତାର ମୁହଁ" କବିଂକ ଭାବବୋଧର ଗୁରୁ ଗଂଭୀର ମନସ୍ଥିତି ମଧ୍ୟରେ ବ୍ୟକ୍ତିଗତ ଏବଂ ତତ୍‌ସଂଲଗ୍ନ ସାମାଜିକ ଜୀବନର ମ୍ରିୟମାଣ ଅବସ୍ଥା ଓ ତତ୍‌ଜନିତ ଅସ୍ୱସ୍ତି ମଧ୍ୟରୁ ମୁକ୍ତି ପାଇଁ ଏକ ଅନ୍ୱେଷୀ ମନର ପଥ ଖୋଜିବାର ଉଦ୍ୟମ । ବସ୍ତୁତଃ ଏ କବିତା ଗ୍ରଂଥ କବିଂକ କୁଂଚିତ କପାଳଯୁକ୍ତ ବୟସ୍କ ଭାବନାର ଗୁରୁଗଂଭୀର ସ୍ୱରକୁ ବହନ କରୁଛି, ଯାହା ସମୟଦ୍ୱାରା ଭାରକ୍ରାଂତ ଓ ସମୟର ମୁଖର ପ୍ରତି-ଧ୍ୱନିର ସ୍ୱରଲିପି କହିଲେ ଅତ୍ୟୁକ୍ତି ହେବ ନାହିଁ । ମୁଖ୍ୟତଃ ମୃତ୍ୟୁ, ଶୋକ, ଯଂତ୍ରଣା, ବ୍ୟସ୍ତତା, ଶୂନ୍ୟତା, ବିସ୍ମୟ, ବେଦନା, ଅନୁରାଗ ଏବଂ ସର୍ବୋପରି ଆଲୋକ ପ୍ରତି ଅନ୍ୱେଷୀ ମନର ହ୍ରଂତସଂତ ଅବସ୍ଥା ଇତ୍ୟାଦି ଯାବତୀୟ ମାନବିକ ଭାବବୋଧ କବିଂକର ଚେତନାବସ୍ତୁ ହୋଇ କବିତାମାନଂକରେ ସ୍ଥାନ ପାଇଛି ।

"ସମାବେଶ"—ପ୍ରମୋଦ ପଂଡା

'ଉତ୍ତରଣ', 'ସ୍ମରଣ ବିସ୍ମରଣ' ପରେ କମଳାକାଂତଂକର 'କବିତାର ମୁହଁ' ତାଂକ କବିପ୍ରତିଭାର ଏକ ସ୍ୱତଂତ୍ରତାର ବାର୍ତ୍ତାବହ । 'ସ୍ମରଣ ବିସ୍ମରଣ'ରେ ଶ୍ରୀ ଲେଂକା ପ୍ରେମ ଭିତରେ ଦେଖିଥିଲେ ରକ୍ତ ଓ ଲୁହ । କିଂତୁ 'କବିତାର ମୁହଁ' ତାଙ୍କ ବେଦନାର୍ଦ୍ର ପ୍ରାଣର ନିର୍ଭୀକ ଉଚ୍ଚାରଣ । × × × "କବିତାର ମୁହଁ" କାବ୍ୟିକ ଓ ଜୀବନଗର୍ଭିତ ପ୍ରାଣସତ୍ତାର ବାର୍ତ୍ତାବହ । ଆଖିର ଦୀପ୍ତି ଓ କାରୁଣ୍ୟର ମମତାସିକ୍ତ ଆଭାରେ ଏହା ଆକର୍ଷଣୀୟ ଯାହା

' ସମସାମୟିକ ବହୁ କାବ୍ୟଶିଳ୍ପୀଂକ କଂଠ ସ୍ୱରଠାରୁ ଅନେକଟା ଭିନ୍ନ ଓ ସ୍ୱତଂତ୍ର ।।

ପ୍ରାଧ୍ୟାପକ ପ୍ରଫୁଲ୍ଲ କୁମାର ମହାଂତି
"ଝଂକାର" ୨୭ଶ ବର୍ଷ—୩ୟ ସଂଖ୍ୟା ।।

## ଅଂତତଃ ନିଷ୍ଟୁପ : (୧୯୭୫)

● ଏହି କବିତା ଗୁଚ୍ଛରେ ବିଭିନ୍ନ ରୁଚିର ୪୬ ଟି କବିତା ସନ୍ନିବେଶିତ । ଏହା ଲେଖକଂକ ଷଷ୍ଠ କବିତା ଗ୍ରଂଥ । ଏ ସଂକଳନଟି କବି କମଳାକାଂତ ଲେଂକାଂକ କବି ପ୍ରତିଭାର ଏକ ସାର୍ଥକ ପ୍ରତିନିଧି । ରବିବାର, ପୂଜାଛୁଟି, ଶତ୍ରୁ ଆଦି କବିତାରେ ସାର୍ବଜନୀନ ଆବେଦନ ରହିଥିଲାବେଳେ ଇଶାଣ, ମ୍ଲେଛ ଆଦି କବିତାରେ ବୌଦ୍ଧିକ ଓ ଆଧ୍ୟାତ୍ମିକ ଚେତନାର ସ୍ୱର ସୁସ୍ପଷ୍ଟ । କବି କମଳାକାଂତଂକ କବିତାର ବୈଶିଷ୍ଟ୍ୟ ହେଲା ଗ୍ରାମ୍ୟ ରୂପକଳ୍ପ ଏବଂ ଆବେଗ-ମିଶ୍ରିତ ବ୍ୟଂଗ୍ୟ । ତେବେ ଏ ଗ୍ରଂଥଟିରେ ସ୍ଥଳବିଶେଷରେ ଅନାବଶ୍ୟକ କଠିନ ଶବ୍ଦାଡ଼ଂବର ଥିବାରୁ ରସାସ୍ୱାଦନରେ ବାଧା ସୃଷ୍ଟି ହୁଏ । ସେ ଯାହା ହେଉ, ବିଦଗ୍ଧ ପାଠକମଂଡଳୀଂକ ମଧ୍ୟରେ ଗ୍ରଂଥଟି ଆଦୃତ ହେବା ଆଶା ।

"ସମାଜ"— ମାର୍ଚ୍ଚ-୧୯୭୬ ।।

● "ଅଂତତଃ ନିଷ୍ଟୁପ" ରେ ଶ୍ରୀ ଲେଂକା ସମୟକୁ ଲ୍ୟାଂଡ ସ୍କେପ୍ ଭାବେ ଗ୍ରହଣ କରିଛନ୍ତି । ଅନ୍ୟ ଅର୍ଥରେ କହିବାକୁ ଗଲେ ସମୟ ହିଁ ଏହି ଗ୍ରଂଥର କାବ୍ୟ-ନାୟକ ଭାବେ ଦେଖାଦେଇଛି । ଏହି କାବ୍ୟର ନାୟକ ସମୟର ଦାସ ନୁହେଁ, ବରଂ ତାର ପରାମର୍ଶଦାତା, ତାର ଉଦ୍‌ଗାତା । ସମୟର ନିରବଚ୍ଛିନ୍ନ ପ୍ରବାହ ଏହି ଉଦ୍‌ଗାତାର ଉଚ୍ଚାରିତ ମଂତ୍ରକୁ ପତ୍ର ଭଳି ଭସାଇ ନେବାକୁ କେବେ ବି ସାହସ କରି ନାହିଁ । ଏଠି ନାୟକ ଗଭୀର ଆତ୍ମପ୍ରତ୍ୟୟରେ ବିଶ୍ୱାସ ଓ ବଳିଷ୍ଠ । x x ଏହି କାବ୍ୟଗ୍ରଂଥରେ ଶ୍ରୀ ଲେଂକାଂକର ସବୁଠାରୁ ବଡ଼ ସଫଳତା ହେଉଛି ବକ୍ତବ୍ୟର ସ୍ପଷ୍ଟତା, ଆବେଗ ଓ ବ୍ୟଂଗ୍ୟ ମିଶ୍ରିତ ସ୍ୱକୀୟ ଅଭିବ୍ୟକ୍ତି । ଏ ସବୁ ଦୃଷ୍ଟିରୁ "ଅଂତତଃ ନିଷ୍ଟୁପ" ତାଂକୁ କବି ହିସାବରେ ଓଡ଼ିଆ ସାହିତ୍ୟରେ ଆହୁରି ପ୍ରତିଷ୍ଠିତ କରିଛି, ଏଥିରେ ସଂଦେହ ନାହିଁ ।

"ଧରିତ୍ରୀ"—ରବିବାର ୧୮।୧।୭୬ ।।

● "ଅତଂତଃ ନିଷ୍ଟୁପ"ର ମୁଖ୍ୟ କାବ୍ୟ ସ୍ୱରକୁ ଆଧ୍ୟାତ୍ମିକ କୁହାଗଲେ, ଅତ୍ୟୁକ୍ତି ହେବ ନାହିଁ । ନୂତନ ଓଡ଼ିଆ କାବ୍ୟଧାରା ବିରୁଦ୍ଧରେ ଏକ ପ୍ରଧାନ

ଅଭିଯୋଗ ଯେ ତାହା ଆମ ଦୃଷ୍ଟି ବା ପରଂପରା ସହିତ ସମନ୍ୱୟ ସ୍ଥାପନ କରିପାରୁ ନାହିଁ । କିଂତୁ ଏ କାବ୍ୟଧାରାର ଅନ୍ୟ ଯାବତୀୟ ବିଲକ୍ଷଣ ସତ୍ତ୍ୱେ ଏ ଅଭିଯୋଗଟି ସମୁଚିତ ନୁହେଁ ବୋଲି ସ୍ୱୀକାର କରିବାକୁ ହେବ । X X X ତାରତିକ ଜୀବନର ଏକ ସ୍ୱୀକୃତି ସତ୍ତ୍ୱେ ସତ୍ତାର ସମ୍ୟକ୍ ଉପଲବଧି କବିଂକୁ ନିଃସମୟର ସ୍ଥିର-ନୀଳ-ସ୍ଥୈର୍ଯ ଭିତରେ ଅନୁଭବ୍ୟ ପ୍ରଶାଂତ ଅନୁଭୂତିର ସ୍ତରକୁ ନେଇ ଯାଇପାରିଛି ବା ରହସ୍ୟମୟତାର କିଚିଂତ୍ ସ୍ପର୍ଶ ଭିତରେ ପରମାତ୍ମୀୟ ଚେତନାର ଚମତ୍କାର ପ୍ରକାଶ ଘଟିଛି କେତୋଟି କବିତାରେ । ଆତ୍ମସ୍ଥ ମୁହୂର୍ତ୍ତର ସ୍କେଚ୍, ପ୍ରତିଧ୍ୱନି, ମଂଚ, ଶୂନ୍ୟବାଣୀ, ସମର୍ପଣ, ଜଣାଣ, ଦେହାତୀତ, ଆଧାର, ସାର୍ଥକ, ଶାଳଗ୍ରାମ, ମୁହୂର୍ତ୍ତ ଓ ନିରୁତ୍ତର ପ୍ରଭୃତି କବିତାଗୁଡ଼ିକ ଏ ଦୃଷ୍ଟିରୁ ଅନୁଶୀଳନ କରାଯାଇପାରେ । X X X ଏତଦ୍ ସତ୍ତ୍ୱେ ଚିଂତାମାନସ ଓ ଶିଳ୍ପମାନସ ଉଭୟ ଦିଗରୁ ଶ୍ରୀ ଲେଂକା ଏ କାବ୍ୟ ଗ୍ରଂଥରେ ଯେ ଉଲ୍ଲେଖଯୋଗ୍ୟ ଉଚ୍ଚତା ହାସଲ କରିଛଂତି ଏଥିରେ ସଂଦେହ ନାହିଁ । ଏହି କ୍ରମବର୍ଦ୍ଧିଷ୍ଣୁ ପ୍ରତିଭାର ଅବିଚ୍ଛିନ୍ନ ଉତ୍ତରଣ ଆମେ କାମନା କରୁଛୁ ।

ଡକ୍ଟର ନିତ୍ୟାନଂଦ ଶତପଥୀ ଓ କୁମୁଦ ଚଂଦ୍ର ଦାଶ ।।
"ଝଂକାର" ୨୮ଶ ବର୍ଷ, ନବମ ସଂଖ୍ୟା



[ମୁଦ୍ରଣଗତ ତ୍ରୁଟି ପାଇଁ ଆମେ କ୍ଷମା ପ୍ରାର୍ଥୀ]

# କବିର ଫସଲ





